# ଆମ ଓଡ଼ିଆ
# ବ୍ୟାକରଣ




ଡକ୍ଟର ଧନେଶ୍ୱର ମହାପାତ୍ର

ଆମ ଓଡ଼ିଆ ବ୍ୟାକରଣ
ଡକ୍ଟର ଧନେଶ୍ୱର ମହାପାତ୍ର

ପ୍ରକାଶକ: ଆମ ଓଡ଼ିଶା
୪ ଆର୍‌୧/୨, ଇଉନିଟ୍-୩
ଭୁବନେଶ୍ୱର-୭୫୧୦୦୧

ମୁଦ୍ରଣ: ଶ୍ରୀରାମ ସ୍କ୍ରିନ୍ ପ୍ରିଣ୍ଟିଂ
ଭୁବନେଶ୍ୱର - ୭୫୧୦୦୭

ପ୍ରଥମ ସଂସ୍କରଣ: ନଭେମ୍ବର, ୨୦୧୪



ପ୍ରଚ୍ଛଦ ଓ ଚିତ୍ର: ମହେଶ୍ୱର ମହାରଣା

ମୂଲ୍ୟ: ଟ. ୩୦/-

**Aama Odia Byakarana**
Dr. Dhaneswar Mahapatra

Publisher: Aama Odisha,
4R 1/2, Unit-3, Bhubaneswar-1
e-mail: aamaodisha@gmail.com

Printer: Sriram Screen Printing
Bhubaneswar-751007

First Print: November, 2014



Cover &
Illustration: Maheswara Maharana

Price: Rs. 30/-

ISBN: 978-81-89436-90-2

# ପଦେ...

ସ୍କୁଲ୍ ପିଲାଙ୍କୁ ଓଡ଼ିଆ ବ୍ୟାକରଣ ବିଷୟରେ ସାମାନ୍ୟ କିଛି ସର୍ବନିମ୍ନ ଧାରଣା ଦେବା ନିମନ୍ତେ ଏହି କ୍ଷୁଦ୍ର ବହିଟି ରଚନା କରାଯାଇଛି । ଏହାକୁ ଓଡ଼ିଆ ବ୍ୟାକରଣର ବର୍ଣ୍ଣମାଳା ମାତ୍ର ବୋଲି କୁହାଯାଇପାରେ । ଭାଷାର ଶୁଦ୍ଧତାରକ୍ଷା ତଥା ଭାବପ୍ରକାଶର ସୁବିଧାପାଇଁ ବ୍ୟାକରଣ ଶିକ୍ଷାର କାଳେକାଳେ ଆବଶ୍ୟକତା ରହିଛି । ଛୋଟ ପିଲାମାନେ ନିଜ ମାତୃଭାଷାର ବ୍ୟାକରଣ ବିଷୟରେ ଯଥା ସମ୍ଭବ ଯତ୍ କଞ୍ଚିତ୍ ଜାଣନ୍ତୁ, ଏହା ହିଁ ବହିଟିର ଉଦ୍ଦେଶ୍ୟ । ପ୍ରାୟ ୪୭ ବର୍ଷ ତଳେ, ଓଡ଼ିଶା ସରକାରଙ୍କ ପି.ପି.ପି. କମିଟି ଥିଲାବେଳେ ଉକ୍ତ କମିଟିଙ୍କଦ୍ୱାରା ନିଯୁକ୍ତ ହୋଇ ମୁଁ ପିଲାଙ୍କପାଇଁ 'ଠିକ୍ ପଢ଼ ଠିକ୍ ଲେଖ' ନାମରେ ଓଡ଼ିଆ ବ୍ୟାକରଣ ବହିଟିଏ ଲେଖିଥିଲି । କିନ୍ତୁ ବର୍ତ୍ତମାନର ଏ ବହିଟି ତାହାଠାରୁ ଆହୁରି ଉପଯୋଗୀ ଭାବରେ ଲିଖିତ ।

'ଆମ ଓଡ଼ିଶା'ର ଅଧ୍ୟକ୍ଷ, ଓଡ଼ିଆ ଭାଷାନୁରାଗୀ ଶ୍ରୀ ସୌମ୍ୟରଂଜନ ପଟ୍ଟନାୟକ ଏହାକୁ ସଚିତ୍ର ସୁନ୍ଦର ଭାବରେ ପ୍ରକାଶକରି ପିଲାମାନଙ୍କ ମନରେ ବ୍ୟାକରଣର ଧାରଣା ସଞ୍ଚାର ଦିଗରେ ଯତ୍ନବାନ୍ ହୋଇଛନ୍ତି । ଏଥିପାଇଁ ମୁଁ ତାଙ୍କୁ ଆନ୍ତରିକ ସାଧୁବାଦ ଜଣାଉଛି ।

ଡକ୍ଟର ଧନେଶ୍ୱର ମହାପାତ୍ର
କଲ୍ୟାଣୀନଗର, କଟକ-୧୩

# ସୂଚିପତ୍ର





# କବିତାରୁ କଥା

ବାର୍ଷିକ ପରୀକ୍ଷା ସରିଯାଇଥାଏ । କମଳ ମନ ଆନନ୍ଦରେ ତା ମାମୁଁ ଘରକୁ ଯାଇଥାଏ । ମାମୁଁ ଦିନେ କମଳକୁ ପାଖରେ ବସାଇ ଗୋଟିଏ କବିତା ଗାଇବାକୁ କହିଲେ । କମଳ ଗାଇଲା–

ପଞ୍ଜାବକେଶରୀ ରଣଜିତ ସିଂହ
ଅଶ୍ୱ ଝପଟାଇ ଥରେ
ଦଳବଳ ଘେନି ଯାଉଥିଲେ କାହିଁ
ଜନହୀନ ପଥପରେ ।

ସହସା ଫିଙ୍ଗିଲା ଢେଲାଟିଏ କିଏ
ସତେ ଅବା ଲକ୍ଷ୍ୟ କରି
ବୀର ରଣଜିତ କପାଳେ ବାଜିଲା
ରୁଧିର ପଡ଼ିଲା ଝରି ।

ନ ଦିଶିଲା ତାଙ୍କୁ କେଉଁ ଦିଗେ କିଛି
ତୁରିତେ ଲଗାମ କଷି
ଓହ୍ଲାଇପଡ଼ି ସେ ଅଶ୍ୱରୁ ଅଧୀରେ
ପଥପରେ ଗଲେ ବସି ।

କମଳ ଏତିକି ଗାଇଲା ପରେ ମାମୁଁ କହିଲେ, "କମଳ, ତୁମେ କବିତାଟିରୁ ଯେତିକି ଗାଇଲ, ତାହାକୁ କଥାରେ ଲେଖିପାରିବ ?" କମଳ ଉତ୍ତର ଦେଲା–

"ହଁ, ପାରିବି ।" ସେ ଉଠିଯାଇ କାଗଜକଲମ ଘେନି ଆସିଲା ଏବଂ ଏହିପରି ଲେଖିଲା-

ଥରେ ପଞ୍ଜାବକେଶରୀ ରଣଜିତ ସିଂହ ଅଶ୍ୱ ଝପଟାଇ ଦଳବଳ ଘେନି ନିର୍ଜନ ପଥରେ ଯାଉଥିଲେ । ସହସା କେହି ଜଣେ ସତେ ଯେପରି ତାଙ୍କ ଉପରକୁ ଲକ୍ଷ୍ୟକରି ଗୋଟିଏ ଢେଲା ଫିଙ୍ଗିଲା । ଢେଲାଟି ବୀର ରଣଜିତଙ୍କର କପାଳରେ ବାଜିଲା । ତାଙ୍କ କପାଳରୁ ରକ୍ତ ଝରିପଡ଼ିଲା । ତାଙ୍କୁ କେଉଁ ଦିଗରେ କିଛି ଦେଖାଗଲା ନାହିଁ । ସେ ଶୀଘ୍ର ଲଗାମ କଷି ଘୋଡ଼ାପିଠିରୁ ଓହ୍ଲାଇ ପଡ଼ିଲେ ଏବଂ ଅଧୀର ଭାବରେ ପଥ ଉପରେ ବସି ପଡ଼ିଲେ ।

ତୁମେ କମଳର ଲେଖାରେ ଦେଖିଲ, ସେ କବିତାର କେତେକ ପଦକୁ କଥାରେ ବଦଳାଇଦେଲା । ଯେପରି କପାଳେ-କପାଳରେ, ଦିଗେ-ଦିଗରେ, ଅଧୀରେ-ଅଧୀରଭାବରେ, ତୁରିତେ-ଶୀଘ୍ର, ପଥପରେ-ପଥ ଉପରେ, ପଥରେ ।

ଏହିପରି କବିତାର କେତେକ ପଦ କଥାରେ ବଦଳିଯାଏ । ଆଉ କେତୋଟି ଉଦାହରଣ ଦେଖ-

| **କବିତାରେ** | **କଥାରେ** | **କବିତାରେ** | **କଥାରେ** |
|---|---|---|---|
| ଜନମ | ଜନ୍ମ | ଆକାଶେ | ଆକାଶରେ |
| ଗରବ | ଗର୍ବ | ଲୋକେ | ଲୋକମାନେ |
| ଶିରାବଣ | ଶ୍ରାବଣ | ପଢ଼ଇ | ପଢ଼େ |
| ମୂରତି | ମୂର୍ତ୍ତି | ବୁଲଇ | ବୁଲେ |

**ଭାଷାରେ କବିତାରୂପକୁ ପଦ୍ୟ ଏବଂ କଥାରୂପକୁ ଗଦ୍ୟ କହନ୍ତି ।**

(କ) ତୁମେ ତୁମ ସାହିତ୍ୟ ବହିର କୌଣସି କବିତାକୁ କଥାରେ ଲେଖ ।

(ଖ) ତଳେ ଦିଆଯାଇଥିବା କବିତାରୂପଗୁଡ଼ିକୁ କଥାରୂପରେ ଲେଖ ।

| କବିତାରୂପ | କଥାରୂପ | କବିତାରୂପ | କଥାରୂପ |
|---|---|---|---|
| ସରବେ | ......... | ଚମକଇ | ......... |
| ସେନେହ | | ଝୁଲଇ | |
| ସଉଦାଗର | | ମୁହିଁ | ......... |
| ପରବତ | ......... | ବିଛଃଶାଖ | |

ପଦ୍ୟ ଗଦ୍ୟ ଲେଖା ଦୁଇଟି ଧାରା
ଭାଷାରେ ଚାଲୁଛି ସଂସାର ସାରା ।

କବି ବୋଲନ୍ତି ତାଙ୍କୁ ଯେ ଲେଖନ୍ତି ପଦ୍ୟରେ
ଲେଖକ ବୋଲନ୍ତି ତାଙ୍କୁ ଲେଖିଲେ ଗଦ୍ୟରେ ।



# ଅର୍ଥ ହିଁ ପ୍ରାଣ

(କ) ଗାଁ, ଆକାଶ, ପବନ, ସେବା, ସୁନ୍ଦର, ମଧୁର- ଏଗୁଡ଼ିକର ଅର୍ଥ ଅଛି । ତେଣୁ ଏଗୁଡ଼ିକ ଗୋଟିଏ ଗୋଟିଏ ଶବ୍ଦ ।

ପକଚ, ଲରଟା, କପଣିଜ, ମବରଟୁ- ଏଗୁଡ଼ିକର କୌଣସି ଅର୍ଥ ନାହିଁ । ତେଣୁ ଏଗୁଡ଼ିକ ଶବ୍ଦ ନୁହେଁ ।

ଏକ ବା ଏକାଧିକ ଅକ୍ଷର ମିଶି ଅର୍ଥ ପ୍ରକାଶ କରୁଥିଲେ ତାହାକୁ **ଶବ୍ଦ** କହନ୍ତି ।

**ଶବ୍ଦ ଆଉ ଅର୍ଥ ଦୁହେଁ ଅଟନ୍ତି ଅଭିନ୍ନ**
**ଚନ୍ଦନ ସହିତ ତା'ର ସୁଗନ୍ଧ ଯେସନ ।**

ତଳ ଲେଖାଗୁଡ଼ିକ ମଧ୍ୟରୁ କିଏ ଶବ୍ଦ, କିଏ ଶବ୍ଦ ନୁହେଁ, ତୁମେ ଚିହ୍ନାଇଦିଅ ।

ରାଜଧାନୀ, ବଗିଚା, କପମା, ବିଜୁଳି, ଫଣିଜ, ଦୋକାନ ।

(ଖ) ଜଳଖିଆ ମୁଁ ଗଲି ଖାଇ ଖେଳିବାକୁ

ପ୍ଲାଷ୍ଟିକ୍ ତିଆରି ଜିନିଷଗୁଡ଼ିକ ଆଜି

ଏହି ଦୁଇ ଧାଡ଼ି ଲେଖାରୁ ଯଦିଓ କିଛି କିଛି ଅର୍ଥ ବୁଝାପଡୁଛି, କିନ୍ତୁ ସ୍ପଷ୍ଟ ଭାବେ ବୁଝାପଡୁ ନାହିଁ । ଆମେ ନିମ୍ନ ପ୍ରକାରେ ଲେଖିଲେ ଅର୍ଥ ସ୍ପଷ୍ଟ ବୁଝାପଡ଼ିବ-

ମୁଁ ଜଳଖିଆ ଖାଇ ଖେଳିବାକୁ ଗଲି ।

ପ୍ଲାଷ୍ଟିକ୍ ତିଆରି ଜିନିଷଗୁଡ଼ିକ ଆଜି ବହୁ କାମରେ ଲାଗୁଛି ।

**ସ୍ପଷ୍ଟ ଭାବରେ ଲେଖିବା**

**ପୂର୍ଣ୍ଣଚ୍ଛେଦଟିଏ ଦେବା ।**

(ଗ) ତୁମେ ପ୍ରଥମ ସ୍ତମ୍ଭ ସହିତ ଦ୍ୱିତୀୟ ସ୍ତମ୍ଭକୁ ଯୋଡ଼ି ଏବଂ ପୂର୍ଣ୍ଣଚ୍ଛେଦ ଦେଇ ସ୍ପଷ୍ଟ ଭାବରେ ବୁଝାପଡୁଥିବା ବାକ୍ୟ ଲେଖ-

| **ପ୍ରଥମ ସ୍ତମ୍ଭ** | **ଦ୍ୱିତୀୟ ସ୍ତମ୍ଭ** |
| --- | --- |
| ମନୁଷ୍ୟ ଆଦରରେ | ପର୍ବତ ରହିଅଛି |
| ସମୁଦ୍ର ଗର୍ଭରେ ମଧ୍ୟ | ଲୁହାପଥର ରପ୍ତାନି ହେଉଛି |
| ପାରାଦ୍ୱୀପ ବନ୍ଦରରୁ | ପଶୁପକ୍ଷୀଙ୍କୁ ପାଳେ |

(ଖ) ନିମ୍ନଲିଖିତ ଧାଡ଼ିଗୁଡ଼ିକର ମୂଳରେ କିମ୍ବା ଶେଷରେ ଆବଶ୍ୟକ ଅଂଶ ଯୋଡ଼, ଯେପରି ସ୍ପଷ୍ଟ ଭାବରେ ଅର୍ଥ ପ୍ରକାଶ ପାଇବ-

ସମୁଦ୍ରରୁ ସଂଗୃହୀତ ହୁଏ

ପଠାଣି ସାମନ୍ତ ରାତିରାତି ଅନିଦ୍ରା ରହି

ଝାନ୍‌ସୀରେ ଜନ୍ମ ହୋଇଥିଲେ

ଭାରତର ଉତ୍ତର ଦିଗରେ

**ଅର୍ଥ ହେଉଛି ଶବ୍ଦ ଓ ବାକ୍ୟର ପ୍ରାଣ** । ଆମେ ଯାହା ଲେଖିବା, ସ୍ପଷ୍ଟ ଭାବରେ ଲେଖିବା, ଯେପରି ସମସ୍ତେ ବୁଝିପାରିବେ ।

ଗଙ୍ଗାଧର ସ୍ପଷ୍ଟ ଭାବରେ ଲେଖିଛନ୍ତି-

ଉଚ୍ଚ ହେବା ପାଇଁ କର ଯେବେ ଆଶା
ଉଚ୍ଚ କର ଆଗେ ନିଜ ମାତୃଭାଷା ।



# ସଂପର୍କରୁ ସିନା ବୁଝିବା

ବର ଓ ଅଶ୍ୱତ୍ଥ ଦୁଇଟି ବଡ଼ ବୃକ୍ଷ ।

ବର ଓ କନ୍ୟା ଉଭୟେ ଶିକ୍ଷିତ ।

ସାବିତ୍ରୀ ଯମଙ୍କୁ ତିନୋଟି ବର ମାଗିଥିଲେ ।

ଗୋପବନ୍ଧୁ ଓଡ଼ିଶାର ଜଣେ ବରପୁତ୍ର ।

ଉପର ବାକ୍ୟଗୁଡ଼ିକରେ ପ୍ରତ୍ୟେକରେ 'ବର' ଶବ୍ଦଟି ବ୍ୟବହୃତ ହୋଇଛି । କିନ୍ତୁ ସବୁ 'ବର' ଶବ୍ଦର ଅର୍ଥ ସମାନ ନୁହେଁ । ପ୍ରଥମ ବାକ୍ୟରେ 'ବର' ଅର୍ଥ ବରଗଛ, ଦ୍ୱିତୀୟରେ 'ବର' ଅର୍ଥ ବିଭାହେଉଥିବା ପୁରୁଷ । ତୃତୀୟରେ 'ବର' ଅର୍ଥ ଦେବତାଙ୍କୁ ଯାହା ମଗାଯାଏ, ଚତୁର୍ଥରେ 'ବର' ଅର୍ଥ ଯୋଗ୍ୟ ବା ଶ୍ରେଷ୍ଠ । ଏହିପରି ବାକ୍ୟରେ ଅନ୍ୟାନ୍ୟ ପଦଗୁଡ଼ିକର ସଂପର୍କରୁ ଭିନ୍ନ ଭିନ୍ନ ଅର୍ଥ ବୁଝାପଡ଼ିଲା ।

ଆମ ଭାଷାରେ କେତେକ ଶବ୍ଦ ଅଛି, ଯେଉଁଗୁଡ଼ିକର ଅର୍ଥ ଭିନ୍ନଭିନ୍ନ । କେଉଁଠି କି ଅର୍ଥ, ତାହା ବାକ୍ୟରେ ଅନ୍ୟ ପଦଗୁଡ଼ିକର ସଂପର୍କରୁ ହିଁ ବୁଝାପଡ଼େ । ଏଭଳି ଶବ୍ଦଗୁଡ଼ିକୁ **ବିଭିନ୍ନାର୍ଥକ ଶବ୍ଦ** କୁହାଯାଏ ।

କେତେଗୁଡ଼ିଏ ବିଭିନ୍ନାର୍ଥକ ଶବ୍ଦକୁ ବାକ୍ୟରେ ବ୍ୟବହାର କରି ଦେଖାଇ ଦିଆଗଲା ।

**ଅମଳ** – ଇଂରେଜମାନଙ୍କ **ଅମଳରୁ** ଆମ ଦେଶରେ ଇଂରାଜୀ ଭାଷା ଚାଲିଛି ।

ଏବର୍ଷ ଭଲ ଫସଲ **ଅମଳ** ହୋଇନାହିଁ ।

ଓଳି - ଘରର ଓଳତଳେ ବସିବା ଉଚିତ ନୁହେଁ ।
ଚାଟଶାଳୀରେ ଦୁଇଓଳ ପାଠପଢ଼ା ହେଉଥିଲା ।

କଳ - ରାୟଗଡ଼ା ଜେକେପୁରରେ କାଗଜକଳ ଅଛି ।
ପିଲାଟି କଳରେ କୋଳି ଜାକିଛି ।
ଦୂରରୁ ଝରଣାର କଳଧ୍ୱନି ଶୁଣାଗଲା ।

କଳା - କନକ ଆଖିରେ କଳା ଲଗାଇଛି ।
ମାଙ୍କଡ଼ ମୁହଁ କଳା ।
ନିଜ ଦେଶର ପ୍ରାଚୀନ କଳାକୁ ରକ୍ଷା କରିବା ଉଚିତ ।
ଝିଅଟି ଚନ୍ଦ୍ରକଳା ପରି ବଢ଼ିଲା ।

କାତି - ମାଛ ଦେହରେ କାତି ଥାଏ ।
ଗୁଆକାତିରେ ଭଲ ଧାର ନାହିଁ ।

କାଳ - ବସନ୍ତକାଳ ସମସ୍ତଙ୍କପାଇଁ ସୁଖକର ।
ଆହା ! ଅଳ୍ପ ବୟସରେ ତାଙ୍କର କାଳ ହୋଇଗଲା ।

ଘଡ଼ି - ପୂର୍ବେ ସୂର୍ଯ୍ୟଘଡ଼ିରୁ ସମୟ ଜାଣୁଥିଲେ ।
ଘଡ଼ିରେ ଘିଅ ରଖିଦିଅ ।
ଆଜି ଦୁଇ ଘଡ଼ି ଅନ୍ଧାର ପରେ ଚନ୍ଦ୍ର ଉଇଁବ ।

ତାଳ - ଗଛରୁ ପାଚିଲା ତାଳ ପଡ଼ିଲା ।
ଠିକ୍ ତାଳରେ ଗୀତ ନଗାଇଲେ ଅଡୁଆ ଶୁଣାଯାଏ ।

ଦଳ - ପୋଖରୀରେ ବହୁତ ଦଳ ଅଛି ।
ଗାଆଁର ଲୋକମାନେ ଦୁଇ ଦଳ ହୋଇଛନ୍ତି ।

ଧାର - ଖରାଦିନେ କେତେକ ନଦୀର ଧାର ଶୁଖିଯାଏ ।
କଟୁରିରେ ଭଲ ଧାର ନାହିଁ ।
ସଡ଼କ ଧାରରେ ଆଗେ ବହୁତ ଗଛ ଥିଲା ।

**ନାଳ** - ନଦୀନାଳସବୁ ବର୍ଷାପାଣିରେ ପୂର୍ଣ୍ଣ ହୋଇଗଲା ।

ପିଲାଟିର ପାଟିରୁ **ନାଳ** ବହୁଛି ।

ପଦ୍ମ **ନାଳରେ** ସୂକ୍ଷ୍ମ ରନ୍ଧ୍ର ଥାଏ ।

**ପଟ** - ସନ୍ନ୍ୟାସୀମାନେ ବୃକ୍ଷର **ପଟକୁ** ବସ୍ତ୍ରରୂପେ ବ୍ୟବହାର କରୁଥିଲେ ।

ରାସ୍ତାରେ ଏପଟ ସେପଟ ହୁଅନାହିଁ ।

ଚାଷୀଟିର ଏକ **ପଟ** ମାତ୍ର ବଳଦ ଅଛି ।

**ପର** - ଛୋଟ ପକ୍ଷୀଟିର ଏପର୍ଯ୍ୟନ୍ତ **ପର** କଅଁଳି ନାହିଁ ।

ନିଜ ପିଲାଙ୍କୁ **ପର** ମନେ କରିବା ଉଚିତ ନୁହେଁ ।

କାଲି ତାଙ୍କର **ପର**ଲୋକ ହୋଇଗଲା ।

**ପକ୍ଷ** - ଶର ଆଘାତରେ ପକ୍ଷୀଟିର **ପକ୍ଷ ଛିଣ୍ଡି**ଗଲା ।

ବିଭୀଷଣ ରାମଚନ୍ଦ୍ରଙ୍କ **ପକ୍ଷ**ରେ ଥିଲେ ।

**ପାଣି** - ଖାଇସାରି **ପାଣି** ପିଇବା ଉଚିତ ।

ସରସ୍ୱତୀଙ୍କ **ପାଣି**ରେ ବୀଣାଥାଏ ବୋଲି ତାଙ୍କୁ ବୀଣାପାଣି କହନ୍ତି ।

**ପିତା** - କଲରା **ପିତା** ଲାଗେ ।

**ପିତା**ମାତାଙ୍କୁ ଭକ୍ତି କର ।

**ବାର** - ଶ୍ୟାମର ମୋଟେ **ବାର** ଟଙ୍କା ଲାଭ ହୋଇଥିଲା ।

ଗୋପାଳବାବୁ ସୋମ**ବାର** ଦିନ ଗାଆଁକୁ ଗଲେ ।

ମୁଁ ତୁମକୁ ବହୁ**ବାର** ଏକଥା କହିଛି ।

ତୁମେ ନିମ୍ନଲିଖିତ ଶବ୍ଦଗୁଡ଼ିକୁ ଭିନ୍ନଭିନ୍ନ ଅର୍ଥରେ ବ୍ୟବହାର କରି ଗୋଟିଏ ଗୋଟିଏ ବାକ୍ୟ ଲେଖ-

ହତା, ଗୁଣ୍ଡା, ପାଗ, ପୁର, ଯୋଗ, ରଙ୍ଗ, ସଜ ।

ରମା ରମା ନାମେ ଦୁଇଟି ବାଳିକା
ଗୋଟିଏ ଗାଆଁରେ ଘର ।
ରମା ବାପା ଯଦୁ ରମା ବାପା ମଧୁ
କହିଲେ ବୁଝନ୍ତି ନର ।

ନିମ୍ନଲିଖିତ ବାକ୍ୟମାନଙ୍କରେ ବିଭିନ୍ନାର୍ଥକ ଶବ୍ଦ ଚିହ୍ନାଅ-

ବାଳିକାଟି କାଳିକଲମରେ ଲେଖୁଛି ।

ସତ୍ୟବାଦୀଲୋକର ଦେହରେ କାଳି ଲାଗେ ନାହିଁ ।

ହରିର ଧନଠାରୁ ନରିର ଧନ ତିନିଗୁଣ ଅଧିକ ।

ଶ୍ରଦ୍ଧା, ଦୟା, କ୍ଷମା ଆଦି ମଣିଷର ଭଲଗୁଣ ଅଟେ ।

ଛାତ୍ରଟି ଶିକ୍ଷକଙ୍କ ପ୍ରଶ୍ନର ଠିକ୍ ଉତ୍ତର ଦେଲା ।

ଶୀତଦିନେ ଉତ୍ତର ଦିଗରୁ ପବନ ବହେ ।

ଆମର ଉତ୍ତରପୁରୁଷମାନେ ଆମଠାରୁ ଅଧିକ ଯୋଗ୍ୟ ହେବା ଦରକାର ।



# ବଡ଼ରୁ ସାନ ସାନ
# ଶବ୍ଦ ଅକ୍ଷର ବର୍ଣ୍ଣ

ଗୋଟିଏ ବଡ଼ ଟେଳାକୁ ଭାଙ୍ଗିଲେ ତାହା ଛୋଟଛୋଟ ଟେଳା ହୋଇଯାଏ । ପୁଣି ଛୋଟ ଛୋଟ ଟେଳାକୁ ଭାଙ୍ଗିଲେ ସେଗୁଡ଼ିକ ଆହୁରି ଛୋଟଛୋଟ ହୋଇଯାଏ । ସେହିପରି ଶବ୍ଦକୁ ଭାଙ୍ଗିଲେ କଅଣ ହୁଏ, ଆମେ ଦେଖିବା ।

'ହାତୀ' ଗୋଟିଏ ଶବ୍ଦ ।

ଏହାକୁ ଯଦି ଆମେ ଭାଙ୍ଗିବା, ଅର୍ଥାତ୍ ରହିରହି ଉଚ୍ଚାରଣ କରିବା, ତେବେ ଏହା ଦୁଇଟି ଭାଗ ହେବ-

ହା / ତୀ

**ଶବ୍ଦର ପ୍ରତ୍ୟେକ ଭାଗକୁ ଅକ୍ଷର କହନ୍ତି ।**

ତେଣୁ 'ହାତୀ' ଶବ୍ଦରେ ଦୁଇଟି ଅକ୍ଷର ଅଛି ।

'ପିଜୁଳି' ଗୋଟିଏ ଶବ୍ଦ ।

ଏହାକୁ ଯଦି ଆମେ ଭାଙ୍ଗିବା, ଅର୍ଥାତ୍ ରହିରହି ଉଚ୍ଚାରଣ କରିବା; ତେବେ ଏହା ତିନିଟି ଭାଗ ହେବ-

ପି / ଜୁ / ଳି

ତେଣୁ 'ପିଜୁଳି' ଶବ୍ଦରେ ତିନିଟି ଅକ୍ଷର ଅଛି ।

ତୁମେ ନିମ୍ନଲିଖିତ ଶବ୍ଦଗୁଡ଼ିକରେ କେତୋଟି ଲେଖାଏଁ ଅକ୍ଷର ଅଛି, ଭାଗଭାଗ କରି ଦେଖାଅ–

ଖାତା, ଖେଳାଳି, କୋଇଲି, ଐରାବତ, ସୌଦାଗର ।

ଅକ୍ଷର ମଧ୍ୟ ଗୋଟିକିଆ ନୁହେଁ । ଅକ୍ଷରରେ ଦୁଇଟି ଅଂଶ ଥାଏ । ଦୁଇଟି ଅଂଶ ମିଶି ଗୋଟିଏ ହୋଇଯାଇଥାଏ । କିପରି ମିଶିକରି ଗୋଟିଏ ହୋଇଯାଇଥାଏ, ତାହା ଆମେ + ଚିହ୍ନଦ୍ୱାରା ଦେଖାଇ ପାରିବା-

ହ + ଆ= ହା, ତ + ଈ = ତୀ = ହାତୀ

ପ + ଇ= ପି, ଜ + ଉ = ଜୁ , ଳ + ଇ = ଳି = ପିଜୁଳି

**ଅକ୍ଷରର ପ୍ରତ୍ୟେକ ଅଂଶକୁ ବର୍ଣ୍ଣ କହନ୍ତି ।**

ତେଣୁ 'ହାତୀ' ଶବ୍ଦରେ ଚାରିଟି ବର୍ଣ୍ଣ ଅଛି । ଯଥା- ହ, ଆ, ତ, ଈ ।

'ପିଜୁଳି , ଶବ୍ଦରେ ଛଅଟି ବର୍ଣ୍ଣ ଅଛି । ଯଥା- ପ, ଇ, ଜ, ଉ, ଳ, ଇ

(ଅକ୍ଷରର ଦୁଇଟିରୁ ଅଧିକ ଅଂଶ ମଧ୍ୟ ଥାଏ । ତାହା ତୁମେ ଯୁକ୍ତାକ୍ଷର ପଢ଼ିଲେ ଜାଣିବ ।)

ଆମ ଓଡ଼ିଆ ଭାଷାରେ ପଚାଶଟି ବର୍ଣ୍ଣ ଅଛି । ଯଥା-

| | | | | | | | | | | |
|---|---|---|---|---|---|---|---|---|---|---|
| ଅ | ଆ | ଇ | ଈ | ଉ | ଊ | ଋ | ଏ | ଐ | ଓ | ଔ |

| | | | | |
|---|---|---|---|---|
| କ | ଖ | ଗ | ଘ | ଙ |
| ଚ | ଛ | ଜ | ଝ | ଞ |
| ଟ | ଠ | ଡ | ଢ | ଣ |
| ତ | ଥ | ଦ | ଧ | ନ |
| ପ | ଫ | ବ | ଭ | ମ |

| | | | | | | | | | | |
|---|---|---|---|---|---|---|---|---|---|---|
| ଯ | ୟ | ର | ଳ | ଲ | ୱ | ଶ | ଷ | ସ | ହ | କ୍ଷ |

ଂ (ଅନୁସ୍ୱାର) ଃ (ବିସର୍ଗ) ଁ (ଚନ୍ଦ୍ରବିନ୍ଦୁ)

ଏହି ୫୦ଟି ବର୍ଣ୍ଣକୁ ଆମ ଭାଷାର **ବର୍ଣ୍ଣମାଳା** କୁହାଯାଏ ।

'ଅ'ଠାରୁ 'ଔ' ପର୍ଯ୍ୟନ୍ତ ବର୍ଣ୍ଣଗୁଡ଼ିକୁ **ସ୍ୱରବର୍ଣ୍ଣ** କହନ୍ତି ।

'କ'ଠାରୁ ଁ (ଚନ୍ଦ୍ରବିନ୍ଦୁ) ପର୍ଯ୍ୟନ୍ତ ବର୍ଣ୍ଣଗୁଡ଼ିକୁ **ବ୍ୟଞ୍ଜନବର୍ଣ୍ଣ** କହନ୍ତି ।

ବ୍ୟଞ୍ଜନବର୍ଣ୍ଣରେ ସ୍ୱରବର୍ଣ୍ଣ ମିଶିଲେ ଆମେ ଏହିପରି ବନାନ କରୁଁ-

| | | | | | | | |
|---|---|---|---|---|---|---|---|
| କ | ରେ | ଆକାର | କା | କ | ରେ | ଋକାର | କୃ |
| କ | ରେ | ହ୍ରସ୍ୱଇକାର | କି | କ | ରେ | ଏକାର | କେ |
| କ | ରେ | ଦୀର୍ଘଈକାର | କୀ | କ | ରେ | ଐକାର | କୈ |
| କ | ରେ | ହ୍ରସ୍ୱଉକାର | କୁ | କ | ରେ | ଓକାର | କୋ |
| କ | ରେ | ଦୀର୍ଘଊକାର | କୂ | କ | ରେ | ଔକାର | କୌ |

କିନ୍ତୁ କ ରେ ଅକାର କ- ଏମିତି କୁହାଯାଏ ନାହିଁ । କାରଣ 'ଅ' ପାଇଁ କୌଣସି ବନାନ ଚିହ୍ନ ନାହିଁ ।

'ଅ'ଟି ସାଧାରଣତଃ ବ୍ୟଞ୍ଜନବର୍ଣ୍ଣରେ ମିଶିକରି ଥାଏ । ଯଦି ଆମେ 'ଅ'କୁ ବ୍ୟଞ୍ଜନବର୍ଣ୍ଣରୁ ବାଦ୍ ଦେବା, ତେବେ ବ୍ୟଞ୍ଜନବର୍ଣ୍ଣକୁ ହଳନ୍ତ୍ ଚିହ୍ନ ଦେଇ ଲେଖିବା । ଯେପରି- କ୍, ଖ୍, ଗ୍, ଘ୍, ଙ୍, ଚ୍, ଛ୍ ଜ୍ ଇତ୍ୟାଦି । କିନ୍ତୁ ଏଭଳି ହଳନ୍ତ ଚିହ୍ନଦିଆ ଗୋଟିକିଆ ବର୍ଣ୍ଣକୁ ଉଚ୍ଚାରଣ କରାଯାଇପାରେ ନାହିଁ । ମାତ୍ର ଶବ୍ଦରେ ଥିଲେ ଉଚ୍ଚାରଣ କରାଯାଇପାରେ । ଯେପରି- ହଠାତ୍, ଅପ୍‌ସରା, ଅବାକ୍ ।

> 'ଡ' ଏବଂ 'ଢ'- ଏ ଦୁଇଟି ବର୍ଣ୍ଣ କୌଣସି ଶବ୍ଦର ଭିତରେ କିମ୍ବା ଶେଷରେ ରହିଲେ ଏ ଦୁଇଟିର ତଳେ ଗୋଟିଏ ଲେଖାଏଁ ବିନ୍ଦୁ ଦିଆଯାଇପାରେ । ଯେପରି- ଓଡ଼ିଆ, ନଡ଼ିଆ, ନଡ଼ା, ବଢ଼େଇ, ବଢ଼ି, କଢ଼ । କିନ୍ତୁ ଶବ୍ଦର ମୂଳରେ ରହିଲେ ଆଦୌ ବିନ୍ଦୁ ଦିଆଯାଏ ନାହିଁ । ଯେପରି- ଡର, ଢିଲା ।

ନିମ୍ନଲିଖିତ ଶବ୍ଦଗୁଡ଼ିକର ବନାନ କର ଏବଂ ସେଗୁଡ଼ିକୁ + ଚିହ୍ନ ଦେଇ ଲେଖ ।

ପିତା, ମାତା, ଭାଇ, ଭଉଣୀ, କୃଷକ, କୂଅ, ସୁରେଶ, ବିନୋଦିନୀ, ବିନୟ, ଐରାବତ, ସୌଦାଗର, ଦାଶରଥି ।

ନୀଳ ଆକାଶ ଦିଶଇ କେଡ଼େ ମନୋହର
ସବୁଜ ବନ ପାହାଡ଼ ଶୀତଳ ସମୀର ।
ମଧୁର କୋଇଲି ଗୀତ ଫୁଲର ସୁବାସ
ସବୁ ମୋତେ ଦେଇଅଛ ଆହେ ଜଗଦୀଶ ।



# ଯୁକ୍ତବର୍ଣ୍ଣ ବା ଯୁକ୍ତାକ୍ଷର

ଭାରତ ଆମର ଜନ୍ମଭୂମି ।

ଆମ ଦେଶରେ ବହୁତ ପର୍ବତମାଳା ଅଛି ।

ପ୍ରଥମ ବାକ୍ୟରେ ଥିବା 'ନ୍ମ'ଟି ବର୍ଣ୍ଣମାଳାରେ ନାହିଁ । ଦ୍ୱିତୀୟ ବାକ୍ୟରେ ଥିବା 'ର୍ବ'ଟି ମଧ୍ୟ ବର୍ଣ୍ଣମାଳାରେ ନାହିଁ । ତେବେ ଏ ଦୁଇଟି କ'ଣ ?

ଏ ଦୁଇଟି ଯୁକ୍ତବର୍ଣ୍ଣ । କାରଣ 'ନ' ଏବଂ 'ମ' ଦୁଇଟି ବ୍ୟଞ୍ଜନବର୍ଣ୍ଣ ମିଶି 'ନ୍ମ' ହୋଇଛି । 'ର' ଏବଂ 'ବ' ଦୁଇଟି ବ୍ୟଞ୍ଜନବର୍ଣ୍ଣ ମିଶି 'ର୍ବ' ହୋଇଛି ।

**ଦୁଇ ବା ଦୁଇରୁ ଅଧିକ ବ୍ୟଞ୍ଜନବର୍ଣ୍ଣ ମିଶିଲେ ଯୁକ୍ତବର୍ଣ୍ଣ ହୁଏ । ଯୁକ୍ତବର୍ଣ୍ଣକୁ ଯୁକ୍ତାକ୍ଷର ମଧ୍ୟ କହନ୍ତି ।**

ତଳେ କେତେକ ଯୁକ୍ତବର୍ଣ୍ଣ ଏବଂ ସେହି ଯୁକ୍ତବର୍ଣ୍ଣ ଥିବା ଶବ୍ଦ ଦିଆଗଲା ।

| | |
|---|---|
| କ + ର = କ୍ର | ଚକ୍ର, ବକ୍ର, ଶୁକ୍ରବାର |
| ର + କ = ର୍କ | ଅର୍କ, କର୍କଶ, କୋଣାର୍କ |
| ନ + ମ = ନ୍ମ | ଜନ୍ମ, ଚିନ୍ମୟ, ଜନ୍ମେଜୟ |
| ଦ + ୟ = ଦ୍ୟ | ଗଦ୍ୟ, ବିଦ୍ୟୁତ୍, ବିଦ୍ୟାଧର |
| ହ + ଲ = ହ୍ଲ | କୋହ୍ଲ, ପ୍ରହ୍ଲାଦ, ଆହ୍ଲାଦ |
| କ + ଲ = କ୍ଲ | ଶୁକ୍ଲ, ଅକ୍ଲେଶ, ଶୁକ୍ଲେଶ୍ୱର |
| କ + ତ = କ୍ତ | ଭକ୍ତ, ବିରକ୍ତ, ଅବିଭକ୍ତ |
| ତ + କ = ତ୍କ | ଉତ୍କଳ, ସତ୍କାର, ଉତ୍କୃଷ୍ଟ |

| | |
|---|---|
| ଷ + କ = ଷ୍କ | ଶୁଷ୍କ, ଦୁଷ୍କର, ପରିଷ୍କାର |
| ଷ + ଣ = ଷ୍ଣ | କୃଷ୍ଣ, ସହିଷ୍ଣୁ, ବୈଷ୍ଣବ |
| ସ + କ = ସ୍କ | ଭାସ୍କର, ପୁରସ୍କାର, ତିରସ୍କାର |
| ତ + ନ = ତ୍ନ | ଯତ୍ନ, ରତ୍ନ , ରତ୍ନାକର |
| ବ + ଜ = ବ୍ଜ | ଅବ୍ଜ, କୁବ୍ଜ, ପଦାବ୍ଜ |
| ଷ + ଟ = ଷ୍ଟ | କଷ୍ଟ, ବିଶିଷ୍ଟ, ଅବଶିଷ୍ଟ |
| ଷ + ଠ = ଷ୍ଠ | କାଷ୍ଠ, ଓଷ୍ଠ, ନିଷ୍ଠାପର |
| ସ + ଥ = ସ୍ଥ | ଅସ୍ଥି, ସ୍ଥାବର, ବାସସ୍ଥାନ |
| ଦ + ମ = ଦ୍ମ | ପଦ୍ମ, ପଦ୍ମନାଭ, ଛଦ୍ମନାମ |
| ଗ + ନ = ଗ୍ନ | ଲଗ୍ନ, ନିମଗ୍ନ, ଅଗ୍ନିଶିଖା |
| ଗ + ଧ = ଗ୍ଧ | ଦୁଗ୍ଧ, ବିମୁଗ୍ଧ, ଦଗ୍ଧୀଭୂତ |
| ସ + ପ = ସ୍ପ | ସ୍ପର୍ଶ, ଇସ୍ପାତ, ପରସ୍ପର |
| ବ + ଦ = ବ୍ଦ | ଶବ୍ଦ, ଶତାବ୍ଦୀ, ସହସ୍ରାବ୍ଦୀ |
| ବ + ଧ = ବ୍ଧ | ଅବ୍ଧି, ସ୍ତବ୍ଧ, ପ୍ରାରବ୍ଧ |
| ଶ + ୱ = ଶ୍ୱ | ଅଶ୍ୱ, ପ୍ରଶ୍ୱାସ, ଅବିଶ୍ୱାସ |
| ଶ + ଚ = ଶ୍ଚ | ନିଶ୍ଚୟ, ପଶ୍ଚିମ, ସୁନିଶ୍ଚିତ |
| ଦ + ଧ = ଦ୍ଧ | ବୁଦ୍ଧ, ଅଶୁଦ୍ଧ, ଶୁଦ୍ଧୋଦନ |
| ଦ + ଭ = ଦ୍ଭ | ଅଦ୍ଭୁତ, ଉଦ୍ଭିଦ, ଉଦ୍ଭାବନ |
| ଦ + ବ = ଦ୍ୱ | ଉଦ୍ୱେଗ, ଉଦ୍ୱେଳନ, ଉଦ୍ବୋଧନ |
| ନ + ନ = ନ୍ନ | ଅନ୍ନ, ଅଭିନ୍ନ, ଜଗନ୍ନାଥ |
| ତ + ତ = ତ୍ତ | ଚିତ୍ତ, ଉତ୍ତର, ମହତ୍ତର |
| ଜ + ଜ = ଜ୍ଜ | ଲଜ୍ଜା, ସଜ୍ଜନ, ସୁସଜ୍ଜିତ |
| ଚ + ଛ = ଚ୍ଛ | ଇଚ୍ଛା, କଚ୍ଛପ, ଆଚ୍ଛାଦନ |
| ଳ + କ = ଳ୍କ | ଶୁଳ୍କ, କଳ୍କୀ, ବଳ୍କଳ, |

| | |
|---|---|
| ଙ + କ = ଙ୍କ | ଅଙ୍କ, ଶଙ୍କର, ପଙ୍କଜିନୀ |
| ଙ + ଖ = ଙ୍ଖ | ଶଙ୍ଖ, ଶଙ୍ଖାରି, ବିଶୃଙ୍ଖଳା |
| ଙ + ଗ = ଙ୍ଗ | ଅଙ୍ଗ, ସଙ୍ଗୀତ, ରଙ୍ଗମାଟି |
| ଙ + ଘ = ଙ୍ଘ | ଜଙ୍ଘ, ଲଙ୍ଘନ, ସଙ୍ଘମିତ୍ରା |
| ଞ + ଚ = ଞ୍ଚ | ମଞ୍ଚ, ଚଞ୍ଚଳ, ପଞ୍ଚବଟୀ |
| ଞ + ଛ = ଞ୍ଛ | ପିଞ୍ଛା, ଲାଞ୍ଛନା, ବାଞ୍ଛାନିଧି |
| ଞ + ଜ = ଞ୍ଜ | ସଞ୍ଜ, ଅଞ୍ଜନ, ପୁଷ୍ପାଞ୍ଜଳି |
| ଞ + ଝ = ଞ୍ଝ | ପଞ୍ଝା, ପଞ୍ଝାଏ, ବିଞ୍ଝାରପୁର |
| ଣ + ଟ = ଣ୍ଟ | ଅଣ୍ଟା, ବଣ୍ଟନ, ଘଣ୍ଟାକଣ୍ଟା |
| ଣ + ଠ = ଣ୍ଠ | କଣ୍ଠ, ଉତ୍କଣ୍ଠା, ଅବଗୁଣ୍ଠନ |
| ଣ + ଡ = ଣ୍ଡ | କାଣ୍ଡ, ପଣ୍ଡିତ, ଲଣ୍ଡଭଣ୍ଡ |
| ଣ + ଢ = ଣ୍ଢ | ଷଣ୍ଢ, ମେଣ୍ଢା, କୁଣ୍ଢେମୋଟ |
| ନ + ତ = ନ୍ତ | ଦାନ୍ତ, ସନ୍ତୋଷ, ହନ୍ତସନ୍ତ |
| ନ + ଥ = ନ୍ଥ | କାନ୍ଥ, ମନ୍ଥନ, ସାଧୁସନ୍ଥ |
| ନ + ଦ = ନ୍ଦ | ନନ୍ଦ, ଆନନ୍ଦ, ମକରନ୍ଦ |
| ନ + ଧ = ନ୍ଧ | ବନ୍ଧୁ, ବନ୍ଧୁକ, କୃପାସିନ୍ଧୁ |
| ମ + ପ = ମ୍ପ | କମ୍ପ, ସମ୍ପଦ, ସମ୍ପାଦନ |
| ମ + ଫ = ମ୍ଫ | ବାମ୍ଫ, ଗୁମ୍ଫନ, ରାଣୀଗୁମ୍ଫା |
| ମ + ବ = ମ୍ବ | ଆମ୍ବ, ସମ୍ବାଦ, ସମ୍ବୋଧନ |
| ମ + ଭ = ମ୍ଭ | ରମ୍ଭା, ଗମ୍ଭୀର, କୁମ୍ଭାଟୁଆ |
| ନ + ତ + ର = ନ୍ତ୍ର | ମନ୍ତ୍ର, ଯନ୍ତ୍ର, ମୁଖ୍ୟମନ୍ତ୍ରୀ |
| ଷ + ଟ + ର = ଷ୍ଟ୍ର | ରାଷ୍ଟ୍ର, ଉଷ୍ଟ୍ର, ମହାରାଷ୍ଟ୍ର |
| ସ + ତ + ର = ସ୍ତ୍ର | ମିସ୍ତ୍ରୀ, ନିରସ୍ତ୍ର, ଧର୍ମଶାସ୍ତ୍ର |
| ର + ଣ + ଣ = ର୍ଣ୍ଣ | କର୍ଣ୍ଣ, ସୁବର୍ଣ୍ଣ, ବର୍ଣ୍ଣବୋଧ |
| ର + ତ + ତ = ର୍ତ୍ତ | କର୍ତ୍ତା, କାର୍ତ୍ତିକ, ବର୍ତ୍ତମାନ |

ନିମ୍ନଲିଖିତ ଲେଖାଗୁଡ଼ିକରେ ଯୁକ୍ତବର୍ଣ୍ଣଗୁଡ଼ିକୁ ଚିହ୍ନାଇଦିଅ ଏବଂ ଏହିପରି ଲେଖ- ପ + ତ + ଆ = ପ୍ତା, ଶ + ଚ + ଇ = ଶ୍ଚି

ରପ୍ତାନି, ପଶ୍ଚିମ, କଣ୍ଢେଇ, ଆମ୍ବିଳା, ଗେହ୍ଲା, ବୁଦ୍ଧିମାନ୍, ଶ୍ୟାମଳ, ସହିଷ୍ଣୁ, ମୁଦ୍ଗର, ଶ୍ଳୋକ, କୁମ୍ଭାଟୁଆ, ଆସ୍ଥା, ଗ୍ରନ୍ଥ, ବିଦ୍ୟା, ତନ୍ମୟ, ସମ୍ମାନ, ଟଙ୍କା, ବଙ୍ଗଳା, ବାଞ୍ଛ, ଅଶ୍ୱ, ପ୍ରଶ୍ନ, ଉତ୍ପନ୍ନ, ବସ୍ତ୍ର, ହସ୍ତୀ, ସନ୍ଧାନ ।

କଷ୍ଟ କଲେ କୃଷ୍ଣ ମିଳନ୍ତି ।

ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ବହୁତ ଶାସ୍ତ୍ର ପଢ଼ିଥିଲେ ।

ପରିଶ୍ରମ କଲେ ଦେହ ସୁସ୍ଥ ରହେ ।

ପ୍ରଭୁ ପରାତ୍ପର ପରମ ଈଶ୍ୱର
ଆଶ୍ରା ଦିଅ ଶ୍ରୀପୟରେ
ପୂରୁ ତବ ଇଚ୍ଛା ମୋର ଏ ଜୀବନେ
ଜୟ ଜଗଦୀଶ ହରେ ।



# କ୍ରିୟାପଦ

(୧) ନୀତା ନଳକୂପରୁ ପାଣି ଆଣୁଛି ।

(୨) ବିନୋଦ ବାପାଙ୍କ ପାଖକୁ ଚିଠି ଲେଖିଲା ।

(୩) ଆଜିର ଛାତ୍ରଛାତ୍ରୀ ଦିନେ ଦେଶର ଦାୟିତ୍ୱ ତୁଲାଇବେ ।

ପ୍ରଥମ ବାକ୍ୟରେ 'ଆଣୁଛି', ପଦଟିରୁ ଆଣିବା କାମ କରାହେବା, ଦ୍ୱିତୀୟ ବାକ୍ୟରେ 'ଲେଖିଲା' ପଦଟିରୁ ଲେଖିବା କାମ କରାହେବା ଏବଂ ତୃତୀୟ ବାକ୍ୟରେ, 'ତୁଲାଇବେ' ପଦଟିରୁ ତୁଲାଇବା କାମ କରାହେବା କଥା ଜଣାପଡୁଛି । 'ଆଣୁଛି', 'ଲେଖିଲା', 'ତୁଲାଇବେ'- ଏହି ପଦଗୁଡ଼ିକ ଗୋଟିଏ ଗୋଟିଏ କ୍ରିୟାପଦ । କାରଣ-

**ଯେଉଁ ପଦରୁ କୌଣସି କାମ କରାହେବା କଥା ଜଣାପଡ଼େ, ତାହାକୁ କ୍ରିୟାପଦ କହନ୍ତି ।**

ପୁଣି, ପ୍ରଥମ ବାକ୍ୟରେ 'ଆଣୁଛି' କ୍ରିୟାପଦଟିରୁ ଜଣାପଡୁଛି ଯେ ଆଣିବା କାମଟି ବର୍ତ୍ତମାନ କାଳରେ ହେଉଛି । ଦ୍ୱିତୀୟ ବାକ୍ୟରେ 'ଲେଖିଲା' କ୍ରିୟାପଦଟିରୁ ଜଣାପଡୁଛି ଯେ ଲେଖିବା କାମଟି ଅତୀତ କାଳରେ ହୋଇଥିଲା । ତୃତୀୟ ବାକ୍ୟରେ 'ତୁଲାଇବେ' କ୍ରିୟାପଦଟିରୁ ଜଣାପଡୁଛି ଯେ ତୁଲାଇବା କାମଟି ଭବିଷ୍ୟତ କାଳରେ ହେବ । ତେଣୁ-

**'ଆଣୁଛି' ବର୍ତ୍ତମାନ କାଳର କ୍ରିୟାପଦ ଅଟେ, 'ଲେଖିଲା' ଅତୀତ କାଳର କ୍ରିୟାପଦ ଅଟେ ଏବଂ 'ତୁଲାଇବେ' ଭବିଷ୍ୟତ କାଳର କ୍ରିୟାପଦ ଅଟେ ।**

ଏହି ତିନି ପ୍ରକାର କ୍ରିୟାପଦ ଛଡ଼ା ଆଉ ଗୋଟିଏ ପ୍ରକାର କ୍ରିୟାପଦ ଅଛି । ସେଥିରୁ କୌଣସି କାମ ସବୁ କାଳରେ ବା ନିତିଦିନିଆ ଭାବରେ କରାହୁଏ ବୋଲି ଜଣାପଡ଼େ । ଯେପରି-

(କ) ପୃଥିବୀ ସୂର୍ଯ୍ୟ ଚାରିପାଖରେ ବୁଲେ ।

(ଖ) ବାପା ପ୍ରତିଦିନ ଭାଗବତ ପଢ଼ନ୍ତି ।

ପ୍ରଥମ ବାକ୍ୟରେ 'ବୁଲେ' କ୍ରିୟାପଦରୁ ପୃଥିବୀର ବୁଲିବା କାମ ସବୁବେଳେ ଚାଲିଛି ବୋଲି ଜଣାପଡୁଛି । ଦ୍ୱିତୀୟ ବାକ୍ୟରେ 'ପଢ଼ନ୍ତି' କ୍ରିୟାପଦରୁ ବାପାଙ୍କର ପଢ଼ିବା କାମ ନିତିଦିନିଆ ଭାବରେ ହୁଏ ବୋଲି ଜଣାପଡୁଛି । ତେଣୁ 'ବୁଲେ' ଏବଂ 'ପଢ଼ନ୍ତି'- ଦୁଇଟି **ନିତ୍ୟ କାଳର କ୍ରିୟାପଦ** ଅଟେ ।

ଏହିପରି କ୍ରିୟାପଦ ଚାରିପ୍ରକାର ।

(୧) **ବର୍ତ୍ତମାନ କାଳର କ୍ରିୟାପଦ**

(୨) **ଅତୀତ କାଳର କ୍ରିୟାପଦ**

(୩) **ଭବିଷ୍ୟତ କାଳର କ୍ରିୟାପଦ**

(୪) **ନିତ୍ୟ କାଳର କ୍ରିୟାପଦ**

ତୁମେ ନିମ୍ନଲିଖିତ ବାକ୍ୟଗୁଡ଼ିକରେ କ୍ରିୟାପଦଗୁଡ଼ିକୁ ଚିହ୍ନାଅ ଏବଂ ସେଗୁଡ଼ିକ କେଉଁ କେଉଁ କାଳର କ୍ରିୟାପଦ ଲେଖ-

ଭଗତ ସିଂ ଦେଶପାଇଁ ପ୍ରାଣ ଦେଇଥିଲେ ।

ଗୀତା ଭଲ ଗୀତ ଗାଏ ।

କାଲି ପ୍ରଧାନଶିକ୍ଷକ ଓଡ଼ିଆ କବିତା ପଢ଼ାଇବେ ।

କୃଷକମାନେ ଫସଲ କାଟୁଛନ୍ତି ।

ବର୍ଷାଋତୁରେ କଦମ୍ବ ଫୁଲ ଫୁଟେ ।

ଗୋବିନ୍ଦ ନୀଳଗିରି ଯାଇଥିଲା ।

ଆସନ୍ତାକାଲି ପ୍ରଧାନମନ୍ତ୍ରୀ ବିଦେଶ ଯିବେ ।

ନିମ୍ନଲିଖିତ କ୍ରିୟାପଦଗୁଡ଼ିକୁ ବିଭିନ୍ନ କାଳର କ୍ରିୟାପଦରେ ପରିଣତ କର ।
ଯେପରି-

| | | | | | |
|---|---|---|---|---|---|
| ହସେ | ହସୁଛି | ହସିଲା | ହସୁଥିଲା | ହସିବ | ହସୁଥିବ |
| କାନ୍ଦେ | ...... | ...... | ...... | ...... | ...... |
| ଦେଖେ | ...... | | ...... | ...... | ...... |
| କରନ୍ତି | ...... | | ...... | ...... | ...... |
| ପଢୁ | | ...... | ...... | ...... | ...... |
| ଲେଖନ୍ତି | | | ...... | | |
| ଖାଉଁ | ...... | ...... | ...... | ...... | ...... |
| ଶୁଣେ | ...... | ...... | ...... | ...... | ...... |

କ୍ରିୟାପଦ ହେଉଛି ବାକ୍ୟର ପ୍ରଧାନପଦ । କାରଣ ବାକ୍ୟରେ ଯେତେ ପଦ ଥିଲେ ମଧ୍ୟ କ୍ରିୟାପଦଟି ନଥିଲେ ବାକ୍ୟର ଅର୍ଥ ଭଲ ଭାବେ ଜଣାପଡ଼େ ନାହିଁ । ଯେପରି-

ଭଗତ ସିଂ ଦେଶପାଇଁ ପ୍ରାଣ ଦେଇଥିଲେ ।

ଏଥିରେ 'ଦେଇଥିଲେ' କ୍ରିୟାପଦଟି ନ ଦିଆଗଲେ ବାକ୍ୟର ଅର୍ଥ ଭଲ ଭାବେ ଜଣାପଡ଼ିବ ନାହିଁ ।

କ୍ରିୟାପଦ ଅଟଇ ତ ବାକ୍ୟର ରାଣୀ
ତା ବିନା ବାକ୍ୟର ଅର୍ଥ ନହୁଏ ଜାଣି ।
ସବୁପଦ ସଙ୍ଗେ ଥାଏ ସମ୍ବନ୍ଧ ତାର
ତେଣୁ ବାକ୍ୟଟି ଅଟଇ ତା ପରିବାର ।



# ଅଭିଧାନରୁ ଅର୍ଥ ଜାଣିବା

ବନ୍ଦନା ଖଣ୍ଡିଏ ପତ୍ରିକା ପଢୁଥିଲା । ସେଥିରେ ଗୋଟିଏ ସ୍ଥାନରେ 'ପାଦପ' ଶବ୍ଦଟି ବ୍ୟବହୃତ ହୋଇଥିଲା । ବନ୍ଦନା ତାହାର ଅର୍ଥ ବୁଝିପାରିଲା ନାହିଁ । ଶିକ୍ଷୟିତ୍ରୀଙ୍କୁ ପଚାରିଲା । ଶିକ୍ଷୟିତ୍ରୀ ତାକୁ ଅଭିଧାନ ବହିଟିଏ ଦେଇ ସେଥିରୁ 'ପାଦପ' ଶବ୍ଦର ଅର୍ଥ ଜାଣିବାପାଇଁ କହିଲେ । କିନ୍ତୁ 'ପାଦପ' ଶବ୍ଦଟି ଅଭିଧାନରେ କେଉଁଠି ଲେଖା ହୋଇଛି, ବନ୍ଦନା ଜାଣି ପାରିଲା ନାହିଁ । ତହୁଁ ଶିକ୍ଷୟିତ୍ରୀ ତାକୁ ଅଭିଧାନରୁ ଅର୍ଥ ବୁଝାଇବାର ସୂତ୍ର ବତାଇଲେ । ସେ ପ୍ରଥମେ କେତେଗୁଡ଼ିଏ ଶବ୍ଦ ଲେଖିବାକୁ ଦେଲେ ଏବଂ ବର୍ଣ୍ଣମାଳାର କ୍ରମ ଅନୁସାରେ ସଜାଇବାକୁ କହିଲେ ।

ଶିକ୍ଷୟିତ୍ରୀ ଡାକିଲେ, ବନ୍ଦନା ଲେଖିଲା-

| | | |
|---|---|---|
| ଖଇର | ଜଉ | ଟଙ୍କା |
| ଲୟ | ଥୟ | କପାଳ |
| ଇଟା | ମକା | ଚତୁର |
| ଅଗ | ଛତା | ହଳ |

ବନ୍ଦନା ତ ଆଗରୁ ଓଡ଼ିଆ ବର୍ଣ୍ଣମାଳା ଜାଣିଥିଲା । ସେ ବର୍ଣ୍ଣମାଳାର କ୍ରମ ଅନୁସାରେ ଶବ୍ଦଗୁଡ଼ିକୁ ସଜାଇ ଲେଖିଲା-

| | | |
|---|---|---|
| ଅଗ | ଚତୁର | ଥୟ |
| ଇଟା | ଛତା | ମକା |
| କପାଳ | ଜଉ | ଲୟ |
| ଖଇର | ଟଙ୍କା | ହଳ |

ତା ପରେ ଶିକ୍ଷୟିତ୍ରୀ ତାକୁ ଆଉ କେତେଗୁଡ଼ିଏ ଶବ୍ଦ ସଜାଇ ଲେଖିବାପାଇଁ ଦେଲେ-

| | | |
|---|---|---|
| କାମ | ଗେଲ | ସୁନା |
| ଚୋରି | କୌଶଳ | କୀଟ |
| ଦିନ | ଖାତା | ଛେଳି |
| ବୁଟ | କୃଷକ | ହିତ |

ବନ୍ଦନା ଲକ୍ଷ୍ୟକଲା, ଏଥର ଶବ୍ଦଗୁଡ଼ିକର ମୂଳ ଅକ୍ଷରରେ ଆ କାର, ହ୍ରସ୍ୱ ଇକାର, ଦୀର୍ଘ ଈକାର, ହ୍ରସ୍ୱ ଉକାର, ଦୀର୍ଘ ଊକାର ଆଦି ରହିଛି । ସେ ବର୍ଣ୍ଣ ଏବଂ ଆ କାର, ହ୍ରସ୍ୱ ଇକାର, ହ୍ରସ୍ୱ ଉକାର ପ୍ରଭୃତି, ଉଭୟକୁ କ୍ରମ ଅନୁସାରେ ରଖି ଶବ୍ଦଗୁଡ଼ିକୁ ସଜାଇଲା ।

| | | |
|---|---|---|
| କାମ | ଖାତା | ଦିନ |
| କୀଟ | ଗେଲ | ବୁଟ |
| କୃଷକ | ଚୋରି | ସୁନା |
| କୌଶଳ | ଛେଳି | ହିତ |

ଶିକ୍ଷୟିତ୍ରୀ ଆନନ୍ଦିତ ହୋଇ କହିଲେ, ବର୍ତ୍ତମାନ ତୁମେ ଅଭିଧାନ ବହିରେ 'ପାଦପ' ଶବ୍ଦଟି କେଉଁଠି ଅଛି, ବାହାର କର ଏବଂ ତାହାର ଅର୍ଥ କଅଣ ଲେଖାହୋଇଛି, କହ । ବନ୍ଦନା ଏଥର ଶବ୍ଦଟି ପାଇପାରିଲା ଏବଂ ଜାଣିଲା ଯେ 'ପାଦପ'ର ଅର୍ଥ ଗଛ ।

ତୁମେ ନିମ୍ନଲିଖିତ ଶବ୍ଦଗୁଡ଼ିକର ଅର୍ଥ ଅଭିଧାନ ଦେଖି ଲେଖ ।

| | | | |
|---|---|---|---|
| ଗିରି | ଧରଣୀ | ବାତୁଳ | କୁସୁମ |
| ସଲିଳ | ତୁରନ୍ତ | ତୁଷାର | ମାନସ |
| ବିହଙ୍ଗ | ଘୋଟକ | କାନନ | ରଜନୀ |
| ରବି | ବିଶାଳ | ଅଖିଳ | ସାଗର |

କଠିନ ଶବ୍ଦର ଅର୍ଥ ଜାଣିବାକୁ
ସାହା ଅଟେ ଅଭିଧାନ
ଅଭିଧାନ ଯେହୁ ଦେଖି ଜାଣେ ତାର
ବଢ଼ଇ ସାହିତ୍ୟ ଜ୍ଞାନ ।



# କିଏ, କଅଣ ?

(କ) ପିଲାଟି ଛବି ଆଙ୍କୁଛି ।

(ଖ) ମାଆ ପୁଅକୁ କ୍ଷୀର ପିଆଇଲେ ।

(ଗ) ଆମ୍ବ ପାଚିଲାଣି ।

ପ୍ରଥମ ବାକ୍ୟରେ 'ଆଙ୍କୁଛି' କ୍ରିୟାପଦ, ଦ୍ୱିତୀୟ ବାକ୍ୟରେ 'ପିଆଇଲେ' କ୍ରିୟାପଦ ଏବଂ ତୃତୀୟ ବାକ୍ୟରେ 'ପାଚିଲାଣି' କ୍ରିୟାପଦ ଅଟେ । ଏହି କ୍ରିୟାପଦଗୁଡ଼ିକର ମୂଳରେ ଆମେ କିଏ କିମ୍ବା କଅଣ ଲଗାଇ ପ୍ରଶ୍ନ ପଚାରିବା ଏବଂ ଉତ୍ତରରେ କି କି ପଦ ମିଳୁଛି ଦେଖିବା ।

| ପ୍ରଶ୍ନ | ଉତ୍ତର |
|---|---|
| କିଏ ଆଙ୍କୁଛି ? | ପିଲାଟି |
| କିଏ ପିଆଇଲେ ? | ମାଆ |
| କଅଣ ପାଚିଲାଣି ? | ଆମ୍ବ |

ଏଠାରେ 'ପିଲାଟି' 'ମାଆ' ଏବଂ 'ଆମ୍ବ' ଗୋଟିଏ ଗୋଟିଏ କର୍ତ୍ତା କାରକ । କାରଣ-

**କ୍ରିୟାପଦର ପୂର୍ବରୁ କିଏ ବା କଅଣ ଲଗାଇ ପ୍ରଶ୍ନ କଲେ ଉତ୍ତରରେ ଯେଉଁ ପଦ ମିଳେ, ତାହା କର୍ତ୍ତାକାରକ ।**

ତୁମେ ନିମ୍ନଲିଖିତ ବାକ୍ୟଗୁଡ଼ିକରେ କର୍ତ୍ତାକାରକ ଚିହ୍ନାଅ ।

(କ) ବାପା ଆଜି ମୁମ୍ବାଇରୁ ଆସିବେ ।

(ଖ) ଆଉ ଲୋକମାନେ ସେଠାକୁ ଯାଉନାହାନ୍ତି ।

(ଗ) ବର୍ଷାଦିନେ କଦମ୍ବଫୁଲ ଫୁଟେ ।

(ଘ) ହଠାତ୍ ଏକ ପ୍ରଚଣ୍ଡ ଶବ୍ଦ ଶୁଭିଲା ।

(ଙ) ଯବାନମାନେ ଶତ୍ରୁସୈନ୍ୟଙ୍କୁ ହଟାଇଦେଲେ ।

ନିମ୍ନଲିଖିତ ବାକ୍ୟମାନଙ୍କରେ ଶୂନ୍ୟସ୍ଥାନରେ ଉପଯୁକ୍ତ କର୍ତ୍ତାକାରକ ଦିଅ-

(କ) ...... ଚଉଦ ବର୍ଷ ପାଇଁ ବନକୁ ଯାଇଥିଲେ ।

(ଖ) ଆକାଶରେ ...... ଘୋଟି ଆସିଲା ।

(ଗ) ଛୁଟି ହେଲେ ...... ସ୍କୁଲ୍‌ରୁ ଫେରନ୍ତି ।

(ଘ) ଆମ ଗାଁ ପାଖରେ ...... ବହୁଅଛି ।

(ଙ) ...... ଡାଳକୁ ଡାଳ ଡେଉଁଛନ୍ତି ।



# କାହାକୁ, କଅଣ ?

(କ) ଶିକ୍ଷକ ଛାତ୍ରଟିକୁ ବୁଝାଇଦେଲେ ।

(ଖ) ରତ୍ନା ଫୁଲଗଛ ଲଗାଉଛି ।

ପ୍ରଥମ ବାକ୍ୟରେ 'ବୁଝାଇଦେଲେ' କ୍ରିୟାପଦ ଏବଂ ଦ୍ୱିତୀୟ ବାକ୍ୟରେ 'ଲଗାଉଛି' କ୍ରିୟାପଦ । ଆମେ କ୍ରିୟାପଦର ମୂଳରେ କାହାକୁ ବା କଅଣ ଲଗାଇ ପ୍ରଶ୍ନ କରିବା ଏବଂ ଉତ୍ତରରେ କି କି ପଦ ମିଳୁଛି, ଦେଖିବା ।

| ପ୍ରଶ୍ନ | ଉତ୍ତର |
|---|---|
| କାହାକୁ ବୁଝାଇଦେଲେ ? | ଛାତ୍ରଟିକୁ |
| କଅଣ ଲଗାଉଛି ? | ଫୁଲଗଛ (ଫୁଲଗଛକୁ) |

**କ୍ରିୟାପଦର ପୂର୍ବରୁ କାହାକୁ ବା କଅଣ ଲଗାଇ ପ୍ରଶ୍ନ କଲେ ଉତ୍ତରରେ ଯେଉଁ ପଦ ମିଳେ, ତାହା କର୍ମକାରକ ।**

ଉପର ବାକ୍ୟ ଦୁଇଟିରେ 'ଛାତ୍ରଟିକୁ' ଏବଂ 'ଫୁଲଗଛ' କର୍ମକାରକ ।

ତୁମେ ନିମ୍ନଲିଖିତ ବାକ୍ୟଗୁଡ଼ିକରେ କର୍ମକାରକ ଚିହ୍ନାଅ ।

(କ) ଶିଳ୍ପୀମାନେ କୋଣାର୍କ ମନ୍ଦିର ଗଢ଼ିଥିଲେ ।

(ଖ) ମଣିଷ ବିପଦବେଳେ ଈଶ୍ୱରଙ୍କୁ ଡାକେ ।

(ଗ) ହରି ହାଟରେ କଦଳୀ ବିକିଲା ।

(ଘ) ମୁଁ ମୁମ୍ବାଇ ଗଲେ ତୁମକୁ କହିବି ।

(ଙ) ସେ ପ୍ରତିଦିନ ସକାଳେ ଖବରକାଗଜ ପଢ଼ନ୍ତି ।



# କାହାଦ୍ୱାରା, କାହିଁରେ ?

(କ) ଆଗେ ଲୋକମାନେ ପରକଲମଦ୍ୱାରା ଲେଖୁଥିଲେ ।

(ଖ) କୁଳମଣି କୁରାଢ଼ିରେ କାଠ ଚିରୁଛି ।

ପ୍ରଥମ ବାକ୍ୟରେ 'ଲେଖୁଥିଲେ' କ୍ରିୟାପଦ ଏବଂ ଦ୍ୱିତୀୟ ବାକ୍ୟରେ 'ଚିରୁଛି' କ୍ରିୟାପଦ । ଏହି କ୍ରିୟାପଦ ଦୁଇଟିର ମୂଳରେ ଆମେ କାହାଦ୍ୱାରା ବା କାହିଁରେ ଲଗାଇ ପ୍ରଶ୍ନ କରିବା ଏବଂ ଉତ୍ତରରେ କି କି ପଦ ମିଳୁଛି, ଦେଖିବା ।

| ପ୍ରଶ୍ନ | ଉତ୍ତର |
|---|---|
| କାହାଦ୍ୱାରା ଲେଖୁଥିଲେ ? | ପରକଲମଦ୍ୱାରା |
| କାହିଁରେ ଚିରୁଛି ? | କୁରାଢ଼ିରେ |

**କ୍ରିୟାପଦ ପୂର୍ବରୁ କାହାଦ୍ୱାରା ବା କାହିଁରେ ଲଗାଇ ପ୍ରଶ୍ନ କଲେ ଉତ୍ତରରେ ଯେଉଁ ପଦ ମିଳେ, ତାହାକୁ କରଣ କାରକ କହନ୍ତି ।**

ଉପର ବାକ୍ୟ ଦୁଇଟିରେ 'ପରକମଲମଦ୍ୱାରା' ଏବଂ 'କୁରାଢ଼ି ରେ' **କରଣକାରକ ।**

ତୁମେ ନିମ୍ନଲିଖିତ ବାକ୍ୟମାନଙ୍କରେ କରଣ କାରକଗୁଡ଼ିକୁ ଚିହ୍ନାଅ ।

(କ) ଯଦୁ ଜାଲରେ ମାଛ ଧରେ ।

(ଖ) କୃଷକମାନେ ଲଙ୍ଗଳଦ୍ୱାରା ହଳ କରନ୍ତି ।

(ଗ) ବିମଳା ଛୁରୀରେ ଆମ୍ବ କାଟୁଛି ।

(ଘ) ଲୋକେ କଂପ୍ୟୁଟରଦ୍ୱାରା ଅନେକ କଥା ଜାଣୁଛନ୍ତି ।

(ଙ) ହନୁମାନ୍ ଗଦାରେ ଅସୁରମାନଙ୍କୁ ମାରିପକାଇଲେ ।



# କାହାପାଇଁ, କଅଣପାଇଁ ?

(କ) ମଧୁବାବୁ ସର୍ବଦା ଓଡ଼ିଶାପାଇଁ ଭାବୁଥିଲେ ।

(ଖ) ଜ୍ଞାନଅର୍ଜନପାଇଁ ଛାତ୍ରଛାତ୍ରୀମାନେ ବହି ପଢ଼ନ୍ତି ।

ପ୍ରଥମ ବାକ୍ୟରେ 'ଭାବୁଥିଲେ' କ୍ରିୟାପଦ ଏବଂ ଦ୍ୱିତୀୟ ବାକ୍ୟରେ 'ପଢ଼ନ୍ତି' କ୍ରିୟାପଦ । ଏହି କ୍ରିୟାପଦ ଦୁଇଟିର ମୂଳରେ ଆମେ କାହାପାଇଁ ବା କଅଣପାଇଁ ଲଗାଇ ପ୍ରଶ୍ନ କଲେ ଉତ୍ତରରେ କି କି ପଦ ମିଳୁଛି, ଦେଖିବା ।

| ପ୍ରଶ୍ନ | ଉତ୍ତର |
|---|---|
| କାହାପାଇଁ ଭାବୁଥିଲେ ? | ଓଡ଼ିଶାପାଇଁ |
| କଅଣପାଇଁ ପଢ଼ନ୍ତି ? | ଜ୍ଞାନଅର୍ଜନପାଇଁ |

**କ୍ରିୟାପଦର ପୂର୍ବରୁ କାହାପାଇଁ ବା କଅଣପାଇଁ ଲଗାଇ ପ୍ରଶ୍ନ କଲେ ଉତ୍ତରରେ ଯେଉଁ ପଦ ମିଳେ, ତାହାକୁ ସଂପ୍ରଦାନ କାରକ ବା ନିମିତ୍ତ କାରକ କହନ୍ତି ।**

ଉପର ବାକ୍ୟ ଦୁଇଟିରେ 'ଓଡ଼ିଶାପାଇଁ' ଏବଂ 'ଜ୍ଞାନଅର୍ଜନପାଇଁ' ଦୁଇଟି ସଂପ୍ରଦାନ କାରକ ବା ନିମିତ୍ତ କାରକ ।

'ଓଡ଼ିଶାପାଇଁ' ପରିବର୍ତ୍ତେ ଆମେ ଯଦି 'ଓଡ଼ିଶାନିମନ୍ତେ' କହିବା, ତେବେ ଅର୍ଥ ମଧ୍ୟ ଠିକ୍ ରହିବ ।

ସେହିପରି 'ଜ୍ଞାନଅର୍ଜନପାଇଁ' ପରିବର୍ତ୍ତେ 'ଜ୍ଞାନଅର୍ଜନନିମନ୍ତେ' କହିଲେ ଅର୍ଥ ମଧ୍ୟ ଠିକ୍ ରହିବ । ତେଣୁ ନିମନ୍ତେ, ନିମିତ୍ତ, ସକାଶେ, କୁ, ପ୍ରଭୃତିକୁ ମଧ୍ୟ 'ପାଇଁ' ପରିବର୍ତ୍ତେ ବ୍ୟବହାର କରାଯାଇପାରେ ।

ତୁମେ ନିମ୍ନଲିଖିତ ବାକ୍ୟମାନଙ୍କରେ ସଂପ୍ରଦାନ କାରକଗୁଡ଼ିକୁ ଚିହ୍ନାଅ ।

(କ) ମାଆ ପୁଅନିମନ୍ତେ ବହି କିଣିଲେ ।

(ଖ) ରାମଚନ୍ଦ୍ର ପିତାଙ୍କ ସତ୍ୟରକ୍ଷାନିମିତ୍ତ ବନକୁ ଗଲେ ।

(ଗ) ସତ କହିବାକୁ କିଆଁ ଡରିବି ।

(ଘ) ଆସନସକାଶେ ବୃଦ୍ଧେ ଏଡ଼େ ବାଇ ।

(ଙ) କଲରା ଖାଇବାକୁ ପିତା, କିନ୍ତୁ ଦେହକୁ ହିତ ।

(ଚ) ପିତାମାତା ପିଲାଙ୍କପାଇଁ ବହୁତ କଷ୍ଟ ସହନ୍ତି ।

(ଛ) ଭୀମ ଭୋଇ ଜଗତନିମନ୍ତେ ପ୍ରାର୍ଥନା କରୁଥିଲେ ।



# କାହାଠାରୁ, କେଉଁଠାରୁ ?

(କ) ବନ୍ଦିତା ନନ୍ଦିତାଠାରୁ ବହି ନେଲା ।

(ଖ) ପାଚିଲା ଆମ୍ବଗୁଡ଼ିଏ ଗଛରୁ ଝଡ଼ିଲା ।

ପ୍ରଥମ ବାକ୍ୟରେ 'ନେଲା' କ୍ରିୟାପଦ ଏବଂ ଦ୍ୱିତୀୟ ବାକ୍ୟରେ 'ଝଡ଼ିଲା' କ୍ରିୟାପଦ । ଏହି କ୍ରିୟାପଦ ଦୁଇଟିର ପୂର୍ବରୁ ଆମେ କାହାଠାରୁ ବା କେଉଁଠାରୁ ଲଗାଇ ପ୍ରଶ୍ନ କରିବା ଏବଂ ଉତ୍ତରରେ କି କି ପଦ ମିଳୁଛି ଦେଖିବା ।

| ପ୍ରଶ୍ନ | ଉତ୍ତର |
|---|---|
| କାହାଠାରୁ ନେଲା ? | ନନ୍ଦିତାଠାରୁ |
| କେଉଁଠାରୁ ଝଡ଼ିଲା ? | ଗଛରୁ |

**କ୍ରିୟାପଦର ପୂର୍ବରୁ କାହାଠାରୁ ବା କେଉଁଠାରୁ ଲଗାଇ ପ୍ରଶ୍ନ କଲେ ଉତ୍ତରରେ ଯେଉଁ ପଦ ମିଳେ, ତାହାକୁ ଅପାଦାନ କାରକ କହନ୍ତି ।**

ଉପର ବାକ୍ୟ ଦୁଇଟିରେ 'ନନ୍ଦିତାଠାରୁ' ଏବଂ 'ଗଛରୁ' ଦୁଇଟି ଅପାଦାନ କାରକ ।

ତୁମେ ନିମ୍ନଲିଖିତ ବାକ୍ୟମାନଙ୍କରେ ଅପାଦାନ କାରକ ଚିହ୍ନାଅ ।

(କ) ସୈନ୍ୟମାନେ ଉଡ଼ାଜାହାଜରୁ ଡେଇଁଲେ ।

(ଖ) ଶ୍ରୀକୃଷ୍ଣ ଗୁରୁଙ୍କଠାରୁ ବିଦ୍ୟାଶିକ୍ଷା କଲେ ।

(ଗ) ଫଟା ମାଠିଆରୁ ପାଣି ଝରେ ।

(ଘ) ଗଙ୍ଗାନଦୀ ହିମାଳୟରୁ ବାହାରିଅଛି ।

(ଙ) ବୃକ୍ଷଠାରୁ ଆମେ ବହୁତ ଉପକାର ପାଉଁ ।



# କାହାର ?

(କ) ଶିକ୍ଷକ ପିଲାଙ୍କର କଥା ଆନନ୍ଦରେ ଶୁଣିଲେ ।

(ଖ) ସାଙ୍ଗର ଖାତାରୁ ଶ୍ୟାମ ଅଙ୍କଟି ବୁଝିନେଲା ।

ପ୍ରଥମ ବାକ୍ୟରେ 'ଶୁଣିଲେ' କ୍ରିୟାପଦ ଏବଂ ଦ୍ୱିତୀୟ ବାକ୍ୟରେ 'ବୁଝିନେଲା' କ୍ରିୟାପଦ । ଆମେ ଯଦି ଏହି କ୍ରିୟାପଦ ଦୁଇଟିର ପୂର୍ବରେ 'କାହାର' ଲଗାଇ ପ୍ରଶ୍ନ କରିବା-

କାହାର ଶୁଣିଲେ ?

କାହାର ବୁଝିନେଲା ?

ଆମେ ଉତ୍ତରରେ କୌଣସି ପଦ ପାଇପାରିବା ନାହିଁ । ଏଭଳି ପ୍ରଶ୍ନ ପଚାରିବା ମଧ୍ୟ ଠିକ୍ ହେଉନାହିଁ । କିନ୍ତୁ ଆମେ ଯଦି ପ୍ରଶ୍ନ କରିବା-

| ପ୍ରଶ୍ନ | ଉତ୍ତର |
|---|---|
| କାହାର କଥା ? | ପିଲାଙ୍କର |
| କାହାର ଖାତାରୁ ? | ସାଙ୍ଗର |

ତେବେ ଉତ୍ତରରେ ପଦ ପାଇପାରିବା । ପ୍ରଶ୍ନ ମଧ୍ୟ ଠିକ୍ ହେବ ।

ତେଣୁ ଜଣାପଡ଼ିଲା, କ୍ରିୟାପଦର ପୂର୍ବରୁ 'କାହାର' ଲଗାଇ ପ୍ରଶ୍ନ କରିହୁଏ ନାହିଁ । ଅନ୍ୟ କୌଣସି ପଦ ପୂର୍ବରୁ 'କାହାର' ଲଗାଇ ପ୍ରଶ୍ନ କରିହୁଏ ଏବଂ ଉତ୍ତର ମିଳେ ।

**କ୍ରିୟାପଦ ଛଡ଼ା ଅନ୍ୟ କୌଣସି ପଦର ପୂର୍ବରୁ 'କାହାର' ଲଗାଇ ପ୍ରଶ୍ନ କଲେ ଉତ୍ତରରେ ଯେଉଁ ପଦଟି ମିଳେ, ତାହାକୁ ସମ୍ବନ୍ଧ ପଦ କହନ୍ତି ।**

ଉପର ବାକ୍ୟ ଦୁଇଟିରେ 'ପିଲାଙ୍କର' ଏବଂ 'ସାଗର' ଦୁଇଟି **ସମ୍ବନ୍ଧ ପଦ ।**

ତୁମେ ନିମ୍ନଲିଖିତ ବାକ୍ୟମାନଙ୍କରେ ସମ୍ବନ୍ଧ ପଦ ଚିହ୍ନାଅ ।

(କ) ଲୋକଙ୍କର ଉନ୍ନତିପାଇଁ ସରକାର ବହୁତ ଚେଷ୍ଟା କରୁଛନ୍ତି ।

(ଖ) ଗୁଣୀଲୋକ ଗୁଣର ମୂଲ୍ୟ ବୁଝନ୍ତି ।

(ଗ) ଗୁରୁଜନଙ୍କ ଉପଦେଶ ମାନିବା ଉଚିତ ।

(ଘ) ବରଗଛର ଓହଳ ଭୂଇଁକୁ ଲାଗିଥାଏ ।

(ଙ) ସମୁଦ୍ରର ଜଳ ଲୁଣିଆ ।

(ଚ) ଛାତ୍ରାବାସରେ ରହିଲେ ପିଲାମାନଙ୍କର ଚାଲିଚଳଣ ବଦଳିଯାଏ ।

(ଛ) ମହାତ୍ମାଗାନ୍ଧୀଙ୍କର ନାମ କିଏ ନଜାଣେ ?



# କେଉଁଠାରେ, କେତେବେଳେ ?

(କ) ନରହରି ବାବୁ ଗାଆଁରେ ରହନ୍ତି ।

(ଖ) ରାତିରେ ନକ୍ଷତ୍ରସବୁ ଦେଖାଯାଆନ୍ତି ।

ପ୍ରଥମ ବାକ୍ୟରେ 'ରହନ୍ତି' କ୍ରିୟାପଦ ଏବଂ ଦ୍ୱିତୀୟ ବାକ୍ୟରେ 'ଦେଖାଯାଆନ୍ତି' କ୍ରିୟାପଦ । ଏହି କ୍ରିୟାପଦ ଦୁଇଟିର ମୂଳରେ ଆମେ କେଉଁଠାରେ ବା କେତେବେଳେ ଲଗାଇ ପ୍ରଶ୍ନ କରିବା ଏବଂ ଉତ୍ତରରେ କେଉଁ କେଉଁ ପଦ ମିଳୁଛି, ଦେଖିବା ।

| ପ୍ରଶ୍ନ | ଉତ୍ତର |
|---|---|
| କେଉଁଠାରେ ରହନ୍ତି ? | ଗାଆଁରେ |
| କେତେବେଳେ ଦେଖାଯାଆନ୍ତି ? | ରାତିରେ |

**କ୍ରିୟାପଦର ମୂଳରେ କେଉଁଠାରେ ବା କେତେବେଳେ ଲଗାଇ ପ୍ରଶ୍ନ କଲେ ଉତ୍ତରରେ ଯେଉଁ ପଦ ମିଳେ, ତାହାକୁ ଅଧିକରଣ କାରକ କହନ୍ତି ।**

ଉପର ବାକ୍ୟଦୁଇଟିରେ **'ଗାଆଁରେ'** ଏବଂ **'ରାତିରେ'** ଦୁଇଟି **ଅଧିକରଣ କାରକ** ।

ତୁମେ ନିମ୍ନଲିଖିତ ବାକ୍ୟଗୁଡ଼ିକରେ ଅଧିକରଣ କାରକ ଚିହ୍ନାଇଦିଅ ।

(କ) ବସନ୍ତ ଋତୁରେ ଦକ୍ଷିଣ ଦିଗରୁ ପବନ ବହେ ।

(ଖ) ସମୁଦ୍ରରେ ମଧ୍ୟ ଅସଂଖ୍ୟ ପ୍ରକାର ପ୍ରାଣୀ ଅଛନ୍ତି ।

(ଗ) ଉତ୍ତର ଦିଗେ ଗଛ ଡାଳେ, ପେଚା ରାବିଲା ରାତ୍ରିକାଳେ ।

(ଘ) ନଦୀରେ ମାଛ ପହଁରୁଛନ୍ତି ।

(ଙ) ବାପା ଦିନରେ ଆଦୌ ଶୁଅନ୍ତି ନାହିଁ ।

ଆମ ଗାଆଁ ପାଖେ ନଈ ବହିଯାଏ
ନଈକୂଳେ ଆମ୍ବତୋଟା
ସେହି ତୋଟା ତଳେ ରହେ କୋକି ଏକା
ଖାଇପିଇ କେଡ଼େ ମୋଟା ।

ପୋଖରୀରେ କଇଁଫୁଲ ଆକାଶରେ ଜହ୍ନ
କ୍ଷେତରେ ଧାନଫସଲ ହରେ ଜନମନ ।



# ବିଶେଷ୍ୟ ପଦ

ଭାରତ - ଏକ ଦେଶର ନାମ
ମନୁଷ୍ୟ - ଏକ ଜାତିର ନାମ
ଲୁହା - ଏକ ପ୍ରକାର ବସ୍ତୁର ନାମ
ଦୟା - ଏକ ଗୁଣର ନାମ
ପଠନ - ଏକ କାର୍ଯ୍ୟର ନାମ

**ଯେକୌଣସି ନାମକୁ ବିଶେଷ୍ୟ ପଦ କୁହାଯାଏ ।**

ଭାରତ, ମନୁଷ୍ୟ, ଲୁହା, ଦୟା, ପଠନ- ଏଗୁଡ଼ିକ ଗୋଟିଏ ଗୋଟିଏ **ବିଶେଷ୍ୟ ପଦ ।**

ସମସ୍ତ ନାମକୁ ପାଞ୍ଚ ଭାଗ କରାଯାଇପାରେ । ଯଥା-

( ୧ ) ସଂଜ୍ଞା ବୁଝାଉଥିବା ନାମ- ଭାରତ, ବାଲ୍ମୀକି, କାଳିଦାସ, ହିମାଳୟ, ମହାନଦୀ, ପାରାଦ୍ୱୀପ, ଚିଲିକା, ପୁରୀ, ଭୁବନେଶ୍ୱର, ଦୁର୍ଗା, ଚନ୍ଦ୍ର, ସୂର୍ଯ୍ୟ ପ୍ରଭୃତି ।

ସଂଜ୍ଞାବୁଝାଉଥିବା ନାମ କେବଳ ଜଣକୁ ବା ଗୋଟିଏକୁ ବୁଝାଏ ।

( ୨ ) ଜାତି ବୁଝାଉଥିବା ନାମ- ମନୁଷ୍ୟ, ପଶୁ, ସିଂହ, ବାଘ, ପକ୍ଷୀ, କୁଆ, ପର୍ବତ, ନଦୀ, ହ୍ରଦ, ଦେଶ, ଗାଈ, ଛେଳି ପ୍ରଭୃତି ।

'ମନୁଷ୍ୟ' ବୋଇଲେ ଅନେକ ମନୁଷ୍ୟ, 'ପର୍ବତ' ବୋଇଲେ ଅନେକ ପର୍ବତ, 'ନଦୀ' ବୋଇଲେ ଅନେକ ନଦୀ, 'କୁଆ' ବୋଇଲେ ଅନେକ

କୁଆ, 'ଦେଶ' ବୋଇଲେ ଅନେକ ଦେଶ । ଏହିପରି ଜାତି ବୁଝାଉଥିବା ନାମ ଅନେକଙ୍କୁ ବୁଝାଏ ।

(୩) ବସ୍ତୁ ବୁଝାଉଥିବା ନାମ- ମାଟି, ପାଣି, ପଥର, ବାଲି, କାଠ, ଗୁଡ଼, ଚିନି, ଲୁହା, ତମ୍ବା, ସୁନା, କ୍ଷୀର, ମହୁ ପ୍ରଭୃତି ।

(୪) ଗୁଣ ବା ଅବସ୍ଥା ବୁଝାଉଥିବା ନାମ- ଦୟା, କ୍ଷମା, ସ୍ନେହ, ମମତା, ଧୈର୍ଯ୍ୟ, ବୀରତ୍ୱ, ଗର୍ବ, ଦୁଷ୍ଟାମି, ମୂର୍ଖତା, ଶୈଶବ, ବାର୍ଦ୍ଧକ୍ୟ, ଦରିଦ୍ରତା ପ୍ରଭୃତି ।

'ଗୁଣ' ବୋଇଲେ ଭଲଗୁଣ ଓ ମନ୍ଦଗୁଣ ଉଭୟକୁ ବୁଝାଏ । ଯେପରି- ଦୟା ମନୁଷ୍ୟର ଏକ ଭଲଗୁଣ, ଗର୍ବ ଏକ ମନ୍ଦଗୁଣ ।

କାର୍ଯ୍ୟ ବୁଝାଉଥିବା ନାମ- ପଢ଼ିବା, ଦେଖିବା, ଧାଇଁବା, କହିବା, ଶୁଣିବା, ଲେଖିବା, ଭ୍ରମଣ, ଶୟନ, ଭୋଜନ, ଗମନ, ରନ୍ଧନ, ଦର୍ଶନ ପ୍ରଭୃତି ।

ଅତଏବ ବିଶେଷ୍ୟ ପଦ ପାଞ୍ଚ ପ୍ରକାର-

(୧) ସଂଜ୍ଞା ବିଶେଷ୍ୟ
(୨) ଜାତି ବିଶେଷ୍ୟ
(୩) ବସ୍ତୁ ବିଶେଷ୍ୟ
(୪) ଗୁଣ ବା ଅବସ୍ଥା ବିଶେଷ୍ୟ
(୫) କାର୍ଯ୍ୟ ବିଶେଷ୍ୟ

ତୁମେ ନିମ୍ନଲିଖିତ ପଦଗୁଡ଼ିକ ମଧ୍ୟରୁ କିଏ କି ପ୍ରକାର ବିଶେଷ୍ୟ, ଚିହ୍ନାଇଦିଅ ।

ନେଉଳ, ବୈତରଣୀ, ଗୋଡ଼ି, ତୁଳା, ଆଗ୍ରା, ଇଟା, ବାଘ, କାଚ, କାଗଜ, ଦର୍ଶନ, ଚୋରି, ମିଛ, ସତ, କବି, କୃଷକ, ପେନ୍‌ସିଲ୍, ଖଟ, ଚନ୍ଦ୍ର, ଶୈଶବ, କଟକ, ମୃଗ ।

ନିମ୍ନଲିଖିତ ପ୍ରତ୍ୟେକ ବାକ୍ୟରେ ପାଞ୍ଚଟି ଲେଖାଏଁ ଏକାପ୍ରକାର ବିଶେଷ୍ୟ ଏବଂ ଗୋଟିଏ ଲେଖାଏଁ ଭିନ୍ନ ପ୍ରକାର ବିଶେଷ୍ୟ ଅଛି । ସେହି ଭିନ୍ନ ପ୍ରକାର ବିଶେଷ୍ୟଗୁଡ଼ିକୁ ଚିହ୍ନାଇଦିଅ ।

(କ) ମହୁ, ଚାଉଳ, ଚିନି, ସହର, କନ୍ଦ, କାଚ

(ଖ) ଯୋଗାଣ, ରାନ୍ଧିବା, ଧୈର୍ଯ୍ୟ, ଖଟଣି, କାଟିବା, ବନ୍ଧାଣ

(ଗ) ଦିଲ୍ଲୀ, ବୈଶାଖ, ପଥର, ଚୀନ୍, ଧଉଳିଗିରି, ପୁରୀ

(ଘ) ଗାଈ, ବାଳକ, ପକ୍ଷୀ, ମଇଁଷି, ମୟୂରଭଞ୍ଜ, ମଣିଷ

(ଙ) ଭକ୍ତି, ସାହସ, ଭୟ, ବିନୟ, ମାଟି, ପାଣ୍ଡିତ୍ୟ

ନିମ୍ନଲିଖିତ ପଦ୍ୟରେ ବିଶେଷ୍ୟ ପଦଗୁଡ଼ିକୁ ଚିହ୍ନାଇଦିଅ ।

ନର ପଶୁ ପକ୍ଷୀ କୀଟ ତରୁ ଲତା ତୃଣ
ସମସ୍ତଙ୍କୁ ମଙ୍ଗଳରେ ରଖ ନାରାୟଣ ।
ରାମ କୃଷ୍ଣ ମହମ୍ମଦ ଯୀଶୁ ବୁଦ୍ଧ ନାମେ
ସୁଖ ଶାନ୍ତି ଖେଳିଯାଉ ପୁର ପଲ୍ଲୀ ଗ୍ରାମେ ।



# ବାଘ-ବାଘୁଣୀ, ମୃଗ-ମୃଗୁଣୀ

ଯେଉଁ ଶବ୍ଦ କେବଳ ପୁରୁଷପ୍ରାଣୀକୁ ବୁଝାଏ, ତାହାକୁ **ପୁଂଲିଙ୍ଗ ଶବ୍ଦ** କହନ୍ତି । ଯେଉଁ ଶବ୍ଦ କେବଳ ସ୍ତ୍ରୀପ୍ରାଣୀକୁ ବୁଝାଏ, ତାହାକୁ **ସ୍ତ୍ରୀଲିଙ୍ଗ ଶବ୍ଦ** କହନ୍ତି । ଯେଉଁ ଶବ୍ଦପୁରୁଷ ପ୍ରାଣୀକୁ ବା ସ୍ତ୍ରୀପ୍ରାଣୀକୁ ବୁଝାଏ ନାହିଁ, ତାହାକୁ **କ୍ଲୀବଲିଙ୍ଗ ଶବ୍ଦ** କହନ୍ତି ।

ତଳେ ଦୁଇଟି ଲେଖାଏଁ ପୁଂଲିଙ୍ଗ ଶବ୍ଦ ଏବଂ ସେ ଦୁଇଟିର ସ୍ତ୍ରୀଲିଙ୍ଗ ଶବ୍ଦ ଦିଆଗଲା । ତୁମେ ସେହି ଅନୁସାରେ ଶୂନ୍ୟସ୍ଥାନ ପୂରଣ କର ।

| | | | | | |
|---|---|---|---|---|---|
| (କ) ବାଘ | - | ବାଘୁଣୀ | ମୃଗ | - | ମୃଗୁଣୀ |
| ଅନ୍ଧ | - | | ରଙ୍କ | - | |
| ଅସୁର | - | | ଶବର | - | |
| ନାଗ | - | | ନାତି | - | |
| ଗଧ | - | | ସଂଗାତ | - | |
| କାଳ | - | | ଗୋପାଳ | - | |
| (ଖ) ଡାକ୍ତର | - | ଡାକ୍ତରାଣୀ | ଚାକର | - | ଚାକରାଣୀ |
| ଠାକୁର | - | | ମାଷ୍ଟର | - | |
| ସାଧବ | - | | ସାଆନ୍ତ | - | |
| ଇନ୍ଦ୍ର | - | | ରୁଦ୍ର | - | |
| ମାଲିକ | - | | ବାବୁ | - | |

| | | | | | |
|---|---|---|---|---|---|
| (ଗ) ଛାତ୍ର | - | ଛାତ୍ରୀ | ସିଂହ | - | ସିଂହୀ |
| ନଟ | - | | ଶୃଗାଳ | - | |
| କୁମାର | - | | ଦେବ | - | |
| ସହଚର | - | | ହରିଣ | - | |
| ହଂସ | - | | ବିହଙ୍ଗ | - | |
| ଦାନବ | - | | ମାନବ | - | |
| ମୟୂର | - | | ରାକ୍ଷସ | - | |
| ନର୍ତ୍ତକ | - | | କପୋତ | - | |
| କିଶୋର | - | | ଦାସ | - | |
| (ଘ) ଟେରା | - | ଟେରୀ | ଗୋରା | - | ଗୋରୀ |
| ଛୋଟା | - | | ବାଙ୍ଗରା | - | |
| ବୁଢ଼ା | - | | ଡେଙ୍ଗା | - | |
| ଗେଡ଼ା | - | | ମୋଟା | - | |
| (ଙ) ଶିଷ୍ୟ | - | ଶିଷ୍ୟା | ସଭ୍ୟ | - | ସଭ୍ୟା |
| ସୁତ | - | | ଜ୍ୟେଷ୍ଠ | - | |
| ଶିଷ୍ଟ | - | | ଭଦ୍ର | - | |
| ସରଳ | - | | ମୁଖର | - | |
| ତନୟ | - | | ଦୁର୍ବଳ | - | |
| କନିଷ୍ଠ | - | | କୋକିଳ | - | |
| (ଚ) ବାଳକ | - | ବାଳିକା | ପାଠକ | - | ପାଠିକା |
| ଗାୟକ | - | | ଦାୟକ | - | |
| ଗ୍ରାହକ | - | | ବାହକ | - | |
| ନାୟକ | - | | ଚାଳକ | - | |
| ପାଳକ | - | | ବାଦକ | - | |

| | | | | | |
|---|---|---|---|---|---|
| (ଛ) ବୁଦ୍ଧିମାନ୍ | - | ବୁଦ୍ଧିମତୀ | ଗୁଣବାନ୍ | - | ଗୁଣବତୀ |
| ଧୀମାନ୍ | - | | ରୂପବାନ୍ | - | |
| ଶ୍ରୀମାନ୍ | - | | ବଳବାନ୍ | - | |
| ଆୟୁଷ୍ମାନ୍ | - | | ଧନବାନ୍ | - | |

ତଳେ କେତେକ ପୁଂଲିଙ୍ଗ ଶବ୍ଦ ଏବଂ ସ୍ତ୍ରୀଲିଙ୍ଗ ଶବ୍ଦ ଦୁଇଟି ସ୍ତମ୍ଭରେ ଦିଆଯାଇଛି । ତୁମେ ସେଗୁଡ଼ିକୁ ଯୋଡ଼ । ଯେପରି- ମାଳୀ - ମାଳୁଣୀ ।

| | |
|---|---|
| ମାଳୀ | ଭଉଣୀ |
| ସଖା | ବେଙ୍ଗୁଲୀ |
| ଭାଇ | ମାତା |
| ବଗ | ମାଳୁଣୀ |
| ନେତା | ସଖୀ |
| ବେଙ୍ଗ | ବଗୁଲୀ |
| ପିତା | ନେତ୍ରୀ |



ବେଙ୍ଗ ବୋଲେ ବେଙ୍ଗୁଲୀ ଲୋ
ମହୀ କ୍ଷଣ କ୍ଷଣକେ ଆନ ।

ହଂସ ଖେଳୁଛି ନଦୀ ନୀରେ
ହଂସୀଟି ବସିଅଛି ତୀରେ ।

# ବିଭକ୍ତି

ପରେଶର ଭାଇ କାଲି ଉଡ଼ାଜାହାଜରେ ଦିଲ୍ଲୀରୁ ଭୁବନେଶ୍ୱରକୁ ଆସିଲେ ।

ଏହି ବାକ୍ୟଟିରେ ସାତଟି ଅଂଶ ଅଛି । ଯଥା-

ପରେଶର / ଭାଇ / କାଲି / ଉଡ଼ାଜାହାଜରେ / ଦିଲ୍ଲୀରୁ / ଭୁବନେଶ୍ୱରକୁ / ଆସିଲେ ।

**ବାକ୍ୟର ପ୍ରତ୍ୟେକ ଅଂଶକୁ ଗୋଟିଏ ଗୋଟିଏ ପଦ କହନ୍ତି** । ତେଣୁ ଉକ୍ତ ବାକ୍ୟରେ ସାତଟି ପଦ ଅଛି ।

ପରେଶର, ଉଡ଼ାଜାହାଜରେ, ଦିଲ୍ଲୀରୁ, ଭୁବନେଶ୍ୱରକୁ- ଏହି ପଦଗୁଡ଼ିକରେ ର, ରେ, ରୁ, କୁ ଲାଗିଛି, କିନ୍ତୁ ଅନ୍ୟ ପଦଗୁଡ଼ିକରେ କିଛି ଲାଗିନାହିଁ । ଆଉ କେତୋଟି ବାକ୍ୟ ଦେଖ ।

(କ) ଦୁର୍ଗାଦେବୀ ମହିଷାସୁରକୁ ମାରିଲେ ।

(ଖ) ଔଷଧଦ୍ୱାରା ରୋଗ ଭଲ ହୁଏ ।

(ଗ) ଗୋପବନ୍ଧୁ ନିଜପାଇଁ କିଛି କରିନଥିଲେ ।

(ଘ) ଗୋପାଳ ବନ୍ଧୁଠାରୁ ବହୁତ ସାହାଯ୍ୟ ପାଇଲା ।

(ଙ) ତୁଳସୀଗଛର ପତ୍ର ବହୁତ ଉପକାରୀ ଅଟେ ।

(ଚ) ହାଟପଡ଼ିଆଠାରେ ସଭା ହେବ ।

ଏହି ବାକ୍ୟଗୁଡ଼ିକରେ କେତେକ ପଦରେ କୁ, ଦ୍ୱାରା, ପାଇଁ, ଠାରୁ, ର, ଠାରେ ଲାଗିଛି ।

ପଦରେ ଲାଗିଥିବା କୁ, ରେ, ର, ରୁ, ଠାରୁ, ଦ୍ୱାରା, ପାଇଁ, ଠାରେ ପ୍ରଭୃତିକୁ ବିଭକ୍ତି ବା ବିଭକ୍ତି ଚିହ୍ନ କୁହାଯାଏ ।

ତୁମେ ନିମ୍ନଲିଖିତ ଲେଖାରେ ବିଭକ୍ତି ଚିହ୍ନ ଚିହ୍ନାଅ ।

ଜନନୀ ଓ ଜନ୍ମଭୂମି ସ୍ୱର୍ଗଠାରୁ ମଧ୍ୟ ବଡ଼ ।

ପ୍ରାଣୀର ନ ପାଞ୍ଚିବ ମନ୍ଦ । ସକଳ ଘଟରେ ଗୋବିନ୍ଦ ॥

କଟକ ଚିନ୍ତା ବାଲମୁଣ୍ଡିକି ।

ଅହିଂସାଦ୍ୱାରା ହିଂସାକୁ ଜିଣିହୁଏ ।

ତୁମକୁ ସେ ଭଲ କଥା କହିଲେ ।

ବିଜ୍ଞାନଦ୍ୱାରା ଆମର ବହୁତ ଉପକାର ହେଉଛି ।

ଓଡ଼ିଶାରେ ଅନେକ ନଦୀ ବହୁଛି ।



# ବଚନ

(କ) ସୁବ୍ରତ ସଭାରେ ବସିଲେ ।

(ଖ) ଲୋକମାନେ ସଭାରେ ବସିଲେ ।

(ଗ) ଗଙ୍ଗାନଦୀ ହିମାଳୟରୁ ବାହାରିଅଛି ।

(ଘ) ନଦୀସବୁ ପର୍ବତମାନଙ୍କରୁ ବାହାରିଅଛନ୍ତି ।

'ସୁବ୍ରତ' ପଦଟି ଜଣେ ଲୋକକୁ ବୁଝାଉଛି, କିନ୍ତୁ 'ଲୋକମାନେ' ପଦଟି ବହୁତ ଲୋକଙ୍କୁ ବୁଝାଉଛି । ସେହିପରି 'ଗଙ୍ଗାନଦୀ' ପଦଟି ଗୋଟିଏ ନଦୀକୁ ବୁଝାଉଛି, 'ହିମାଳୟରୁ' ପଦଟି ଗୋଟିଏ ପର୍ବତକୁ ବୁଝାଉଛି, କିନ୍ତୁ 'ନଦୀସବୁ' ପଦଟି ବହୁତ ନଦୀକୁ ବୁଝାଉଛି ଏବଂ 'ପର୍ବତମାନଙ୍କରୁ' ପଦଟି ବହୁତ ପର୍ବତକୁ ବୁଝାଉଛି ।

**ଯେଉଁ ପଦ ଏକ ବା ଗୋଟିଏକୁ ବୁଝାଏ, ତାହାକୁ ଏକବଚନ କୁହାଯାଏ ଏବଂ ଯେଉଁପଦ ବହୁତଙ୍କୁ ବୁଝାଏ, ତାହାକୁ ବହୁବଚନ କୁହାଯାଏ ।**

ନିମ୍ନଲିଖିତ ବାକ୍ୟଗୁଡ଼ିକରେ କେଉଁ କେଉଁ ପଦ ଏକବଚନ ଏବଂ କେଉଁ କେଉଁ ପଦ ବହୁବଚନ, ଚିହ୍ନାଇଦିଅ ।

(କ) ପିଲାମାନେ ପିତାମାତାଙ୍କୁ ଭକ୍ତି କରନ୍ତି ।

(ଖ) ମାଳୀଟି ଗଛଗୁଡ଼ିକୁ ଯତ୍ନରେ ବଢ଼ାଇଲା ।

(ଗ) ବଙ୍ଗୋପସାଗରରେ ସାଧବମାନଙ୍କର ବୋଇତସବୁ ଚାଲୁଥିଲା ।

(ଘ) ନିଧି ମଉସା ଅନାବନା ଗଛଗୁଡ଼ାକୁ କାଟି ପକାଇଲେ ।

(ଙ) ସୂର୍ଯ୍ୟ ଉଦୟ ହେଲେ ତାରାଗଣ ଦେଖାଯାଆନ୍ତି ନାହିଁ ।

(ଚ) ତୁମେ ଡରିଲେ ସେମାନେ ତୁମକୁ ଡରାଇବେ ।

(ଛ) ନେତୃବୃନ୍ଦ ଜନତାପାଇଁ କାମ କରନ୍ତି ।

ବୀର ହନୁମାନ ଗଦା ବୁଲାଇ
ଅସୁରମାନଙ୍କୁ ଦେଲେ ଗଡ଼ାଇ ।

ଆନନ୍ଦରେ ପକ୍ଷୀଗଣ ଯାଉଛନ୍ତି ଉଡ଼ି
ଗୋଠକୁ ଗୋଧନପଲ ଆସନ୍ତି ବାହୁଡ଼ି ।



# ପୁରୁଷ

(କ) ମୁଁ ପଢ଼ିଲି ।          ଆମ୍ଭେମାନେ ପଢ଼ିଲୁଁ ।

(ଖ) ତୁମେ ପଢ଼ିଲ ।      ତୁମେମାନେ ପଢ଼ିଲ ।

(ଗ) ବାଳକଟି ପଢ଼ିଲା । ବାଳକମାନେ ପଢ଼ିଲେ ।

ଉପର ବାକ୍ୟଗୁଡ଼ିକରେ କ୍ରିୟାପଦଗୁଡ଼ିକ ବଦଳିଥିବାର ଦେଖିପାରୁଛ । କାହିଁକି ବଦଳିଛି ?

**ପୁରୁଷ** ଅନୁସାରେ କ୍ରିୟାପଦ ବଦଳେ ।

| | |
|---|---|
| ମୁଁ, ଆମେ, ଆମେମାନେ | ପ୍ରଥମ ପୁରୁଷ |
| ତୁ, ତୁମେ, ତୁମେମାନେ | ଦ୍ୱିତୀୟ ପୁରୁଷ |
| ଆଉ ଅନ୍ୟ ସମସ୍ତେ | ତୃତୀୟ ପୁରୁଷ |

ବିଭିନ୍ନ ବିଭକ୍ତିରେ ଏବଂ ଏକବଚନ ତଥା ବହୁବଚନରେ **ପ୍ରଥମ ପୁରୁଷର ରୂପ** ଏହିପରି ହୁଏ-

ମୋର, ଆମର, ଆମମାନଙ୍କର, ମୋଠାରୁ, ଆମଠାରୁ, ଆମମାନଙ୍କଠାରୁ, ମୋତେ, ଆମକୁ, ଆମମାନଙ୍କୁ, ମୋଠାରେ, ଆମଠାରେ, ଆମମାନଙ୍କଠାରେ ଇତ୍ୟାଦି ।

**ଦ୍ୱିତୀୟ ପୁରୁଷର ରୂପ** ଏହିପରି ହୁଏ-

ତୋର, ତୁମର, ତୁମମାନଙ୍କର, ତୋଠାରୁ, ତୁମଠାରୁ, ତୁମମାନଙ୍କଠାରୁ, ତୋତେ, ତୁମକୁ, ତୁମମାନଙ୍କୁ, ତୋପାଇଁ, ତୁମପାଇଁ, ତୁମମାନଙ୍କପାଇଁ ଇତ୍ୟାଦି ।

ତୃତୀୟ ପୁରୁଷର ରୂପ ଏହିପରି ହୁଏ-

ବାଳକର, ବାଳକମାନଙ୍କର, ବାଳକଠାରୁ, ବାଳକମାନଙ୍କଠାରୁ, ଗଛକୁ, ଗଛଗୁଡ଼ିକୁ, ଗଛରେ, ଗଛଗୁଡ଼ିକରେ ଇତ୍ୟାଦି ।

ତୁମେ ନିମ୍ନଲିଖିତ ବାକ୍ୟମାନଙ୍କରେ କଳା ଅକ୍ଷରର ପଦଗୁଡ଼ିକ କିଏ କେଉଁ ପୁରୁଷ ଚିହ୍ନାଇଦିଅ ।

(କ) **ଶିକ୍ଷକ ଆମକୁ** ଅଙ୍କ ବୁଝାଇଦେଲେ ।

(ଖ) **ସେମାନେ ତୁମ** କଥାକୁ ଠିକ୍ ମନେକଲେ ।

(ଗ) **ଭାଇ ମୋପାଇଁ** ଭଲ **ବହିଗୁଡ଼ିଏ** ଆଣିଛନ୍ତି ।

(ଘ) **ତୁମମାନଙ୍କଦ୍ୱାରା ଦେଶର** ଉନ୍ନତି ହୋଇପାରିବ ।

(ଙ) ଲୋକମାନେ **ସନ୍ଥଙ୍କଠାରୁ** ଉପଦେଶ ଶୁଣିଲେ ।

ମୁଁ କଲି ମୁଁ ଦେଲି ମୋର ଏ ସବୁ ସଂପତ୍ତି
ଭଲ ଲୋକ ନୁହଁନ୍ତି ଯେ ଏମିତି ଭାବନ୍ତି ।
ତୁମପାଇଁ ଆମପାଇଁ ସବୁ ଜୀବପାଇଁ
ରଚିଛନ୍ତି ମହାପ୍ରଭୁ ବନ ଜଳ ଭୂଇଁ ।



# ବିଶେଷଣ ପଦ

(କ) ଦୟାଳୁ ଲୋକ (ଗ) ପାଞ୍ଚ ଟଙ୍କା

(ଖ) ଭଙ୍ଗା ଘର (ଘ) ବହୁତ କ୍ଷୀର

ଲୋକ, ଘର, ଟଙ୍କା, କ୍ଷୀର- ଏଗୁଡ଼ିକ ଗୋଟିଏ ଗୋଟିଏ ବିଶେଷ୍ୟ ପଦ । 'ଦୟାଳୁ' ପଦଟି ଲୋକର ଦୟାଗୁଣକୁ ବୁଝାଉଛି । 'ଭଙ୍ଗା' ପଦଟି ଘରର ଅବସ୍ଥାକୁ ବୁଝାଉଛି । 'ପାଞ୍ଚ' ପଦଟି ଟଙ୍କାର ସଂଖ୍ୟାକୁ ବୁଝାଉଛି । 'ବହୁତ' ପଦଟି କ୍ଷୀରର ପରିମାଣକୁ ବୁଝାଉଛି ।

**ଯେଉଁ ପଦ ବିଶେଷ୍ୟ ପଦର ଗୁଣ, ଅବସ୍ଥା, ସଂଖ୍ୟା କିମ୍ବା ପରିମାଣକୁ ବୁଝାଏ, ତାହାକୁ ବିଶେଷଣ ପଦ କହନ୍ତି ।**

ଦୟାଳୁ, ଭଙ୍ଗା, ପାଞ୍ଚ, ବହୁତ- ଏଗୁଡ଼ିକ ଗୋଟିଏ ଗୋଟିଏ **ବିଶେଷଣ ପଦ ।**

ତଳେ କେତେକ ବିଶେଷଣ ପଦ ଓ ସେଗୁଡ଼ିକର ବିଶେଷ୍ୟ ପଦ ଦିଆଯାଇଛି । ବିଶେଷଣଗୁଡ଼ିକ ବିଶେଷ୍ୟଗୁଡ଼ିକର କଅଣ ବୁଝାଉଛି ଲେଖ ।

| | | | |
|---|---|---|---|
| ସରଳ | ବାଳକ | ଅଧିକ | ଲାଭ |
| ତାତିଲା | ବାଲି | ଚାରି | ଦିଗ |
| ସାତ | ସମୁଦ୍ର | ଖାଣ୍ଟି | କ୍ଷୀର |
| ଅଳ୍ପ | ଜଳ | ଚଳନ୍ତା | ଗାଡ଼ି |
| ଦୁର୍ବଳ | ଦେହ | ଚିରା | ଲୁଗା |

ତୁମେ ନିମ୍ନଲିଖିତ ବିଶେଷ୍ୟ ପଦଗୁଡ଼ିକର ଗୋଟିଏ ଗୋଟିଏ ବିଶେଷଣ ପଦ ଦିଅ ।

ନଦୀ, ଗାଈ, ଚାଉଳ, ଫୁଲ, ମାଠିଆ

**ସରଳ** ଜୀବନ **କୋମଳ** ବଚନ

**ଶୀତଳ** ପବନ **ନିର୍ମଳ** ଗଗନ

**ନୂତନ** ବସନ **ସୁହାସ** ବଦନ

କି **ସୁନ୍ଦର** ଆହା      କି **ଆନନ୍ଦମୟ**

ଏହି **ବିଶାଳ** ସଂସାର

ଧନ୍ୟ ମହାପ୍ରଭୁ      ମହିମା ତୁମ୍ଭର

ଅଟେ **ଅନନ୍ତ ଅପାର** ।

ନିମ୍ନଲିଖିତ ବାକ୍ୟମାନଙ୍କରେ ବିଶେଷଣ ପଦଗୁଡ଼ିକୁ ଚିହ୍ନାଇଦିଅ ।

(କ) ଗଭୀର ନଦୀରେ କୁମ୍ଭୀର ରହନ୍ତି ।

(ଖ) ନରମ ଖରାରେ ଦିଗ ଚହଟିଲା ।

(ଗ) ଗୋପାଳ ଚାରି ଲିଟର କ୍ଷୀର ବିକିଲା ।

(ଘ) ବେପାରୀମାନେ କମ୍ ଦାମ୍‌ରେ କିଣି ଅଧିକ ଦାମ୍‌ରେ ବିକନ୍ତି ।

(ଙ) ବିଦ୍ୱାନ ଲୋକମାନେ ସବୁଠାରେ ଆଦର ପାଆନ୍ତି ।



# ସର୍ବନାମ ପଦ

ରାମଚନ୍ଦ୍ର ଜଣେ ଉତ୍ତମ ରାଜା ଥିଲେ । ରାମଚନ୍ଦ୍ର ପ୍ରଜାମାନଙ୍କୁ ସୁଖରେ ରଖିବାପାଇଁ ସର୍ବଦା ଚେଷ୍ଟା କରୁଥିଲେ । ପିତାମାତାଙ୍କ ପ୍ରତି ରାମଚନ୍ଦ୍ରଙ୍କର ଅଶେଷ ଭକ୍ତି ଥିଲା । ତେଣୁ ରାମଚନ୍ଦ୍ରଙ୍କୁ ଭଗବାନ୍ ବୋଲି କହନ୍ତି ।

ଉପର ଲେଖାରେ 'ରାମଚନ୍ଦ୍ର' ଗୋଟିଏ ବିଶେଷ୍ୟ ପଦ । ଏହି ବିଶେଷ୍ୟ ପଦଟି ବାରମ୍ବାର ବ୍ୟବହୃତ ହୋଇଥିବାରୁ ଶୁଣିବାକୁ ଭଲ ଲାଗୁନାହିଁ । ଏହାକୁ ଯଦି ଆମେ ନିମ୍ନ ପ୍ରକାରେ ଲେଖିବା, ତେବେ ଶୁଣିବାକୁ ଭଲ ଲାଗିବ-

ରାମଚନ୍ଦ୍ର ଜଣେ ଉତ୍ତମ ରାଜା ଥିଲେ । **ସେ** ପ୍ରଜାମାନଙ୍କୁ ସୁଖରେ ରଖିବାପାଇଁ ସର୍ବଦା ଚେଷ୍ଟା କରୁଥିଲେ । ପିତାମାତାଙ୍କ ପ୍ରତି **ତାଙ୍କର** ଅଶେଷ ଭକ୍ତି ଥିଲା । ତେଣୁ **ତାଙ୍କୁ** ଭଗବାନ୍ ବୋଲି କହନ୍ତି ।

ଏଠାରେ ସେ, ତାଙ୍କର, ତାଙ୍କୁ- ଏଗୁଡ଼ିକ **ସର୍ବନାମ ପଦ** । କାରଣ ଏଗୁଡ଼ିକ ରାମଚନ୍ଦ୍ର, ରାମଚନ୍ଦ୍ରଙ୍କର, ରାମଚନ୍ଦ୍ରଙ୍କୁ- ଏହି ବିଶେଷ୍ୟ ପଦଗୁଡ଼ିକର ପରିବର୍ତ୍ତେ ବ୍ୟବହୃତ ହୋଇଛି ।

**ଯେଉଁ ପଦ ବିଶେଷ୍ୟ ପଦ ପରିବର୍ତ୍ତେ ବ୍ୟବହୃତ ହୁଏ, ତାହାକୁ ସର୍ବନାମ ପଦ କହନ୍ତି ।**

ସେ, ତାହା, ଏ, ଏହା, କିଏ, କଅଣ, ଯେ, ଯାହା, ମୁଁ, ତୁମେ, ଆପଣ ପ୍ରଭୃତି **ସର୍ବନାମ ପଦ** । କାରଣ ଏଗୁଡ଼ିକ ବିଶେଷ୍ୟପଦର ପରିବର୍ତ୍ତେ ବ୍ୟବହୃତ ହୁଅନ୍ତି ।

ବିଶେଷ୍ୟ ପଦମାନଙ୍କର ଯେପରି ବିଭିନ୍ନ ବିଭକ୍ତି, ଏକବଚନ ଓ ବହୁବଚନରେ ବିଭିନ୍ନ ରୂପ ହୁଏ, ସର୍ବନାମ ପଦମାନଙ୍କର ମଧ୍ୟ ସେହିପରି ବିଭିନ୍ନ ବିଭକ୍ତି, ଏକବଚନ ଓ ବହୁବଚନରେ ବିଭିନ୍ନ ରୂପ ହୁଏ । ଯେପରି-

ସେ - ସେମାନେ, ତାକୁ, ତାଙ୍କୁ, ସେମାନଙ୍କୁ, ତାଦ୍ୱାରା, ସେମାନଙ୍କଦ୍ୱାରା, ତା ପାଇଁ, ତାଙ୍କ ପାଇଁ ଇତ୍ୟାଦି ।

ଯେ - ଯେଉଁମାନେ, ଯାହାକୁ, ଯାହାଙ୍କୁ, ଯେଉଁମାନଙ୍କଦ୍ୱାରା, ଯାହାଦ୍ୱାରା, ଯାହାର, ଯାହାଙ୍କର ଇତ୍ୟାଦି ।

କିଏ - କେଉଁମାନେ, କାହାକୁ, କେଉଁମାନଙ୍କୁ, କାହାପାଇଁ, କାହାଠାରୁ, କାହାର, କେଉଁମାନଙ୍କର ଇତ୍ୟାଦି ।

ଏ - ଏମାନେ, ଏହାକୁ, ଏହାଦ୍ୱାରା, ଏହାର, ଏହାଠାରୁ, ଏମାନଙ୍କଠାରୁ, ଏହାଠାରେ, ଏମାନଙ୍କଠାରେ ଇତ୍ୟାଦି ।

ମୁଁ - ମୋତେ, ଆମକୁ, ମୋର, ଆମର, ଆମମାନଙ୍କର, ମୋଦ୍ୱାରା, ଆମଦ୍ୱାରା, ଆମଠାରୁ, ମୋଠାରୁ ଇତ୍ୟାଦି ।

ତୁମେ - ତୋତେ, ତୁମକୁ, ତୁମମାନଙ୍କୁ, ତୁମଠାରୁ, ତୋଠାରୁ, ତୁମର, ତୁମମାନଙ୍କର ଇତ୍ୟାଦି ।

ଆପଣ - ଆପଣମାନେ, ଆପଣଙ୍କଠାରେ, ଆପଣମାନଙ୍କଠାରେ ଆପଣଙ୍କୁ, ଆପଣମାନଙ୍କୁ ଇତ୍ୟାଦି ।

ତୁମେ ନିମ୍ନଲିଖିତ ବାକ୍ୟମାନଙ୍କରେ ସର୍ବନାମ ପଦ ଚିହ୍ନାଇଦିଅ ।

(କ) ରାଜେନ୍ଦ୍ର ଭଲ ପାଠ ପଢ଼େ । ତାକୁ ଶିକ୍ଷକମାନେ ଆଦର କରନ୍ତି ।

(ଖ) ନିମ୍ବଗଛ ଅତ୍ୟନ୍ତ ଦରକାରୀ । ଏହାର ପତ୍ରରୁ ଅନେକ ପ୍ରକାର ଔଷଧ ତିଆରି ହୁଏ ।

(ଗ) ଦେଶ ପ୍ରତି ଆମର କର୍ତ୍ତବ୍ୟ ରହିଛି ।

(ଘ) ତୁମପାଇଁ ମୁଁ ନିଶ୍ଚୟ ଭଲ କଲମଟିଏ ଆଣିବି ।

(ଙ) ଯେଉଁମାନଙ୍କର ଇଚ୍ଛା ଅଛି, ସେମାନେ ଆଗେଇ ଆସନ୍ତୁ ।

ସବୁ ନାମ ପାଇଁ ଯେଣୁ ହୁଏ ବ୍ୟବହାର ।
ତେଣୁ 'ସର୍ବନାମ' ବୋଲି ନାମଟି ତାହାର ।

କିଏ କଅଣ କହିଲା ନ ଶୁଣ ହେ ତାହା
କାହା ମନ୍ଦ ପାଞ୍ଚ ନାହିଁ ଭଗବାନ ସାହା ।

ଯାହାକୁ ରଖିବେ ଅନନ୍ତ
କି କରିପାରେ ବଳବନ୍ତ ।



# ଅବ୍ୟୟ ପଦ

(କ) କମଳା ଓ ବିମଳା ଦୁଇ ଭଉଣୀ ।

(ଖ) ଶିକ୍ଷକ ଆଜି ଗଦ୍ୟ କିମ୍ବା ପଦ୍ୟ ପଢ଼ାଇବେ ।

ପ୍ରଥମ ବାକ୍ୟରେ 'ଓ' ପଦଟିର ରୂପରେ କୌଣସି ପରିବର୍ତ୍ତନ ହୋଇପାରିବ ନାହିଁ । ସେହିପରି ଦ୍ୱିତୀୟ ବାକ୍ୟରେ 'କିମ୍ବା' ପଦଟିର ରୂପରେ କୌଣସି ପରିବର୍ତ୍ତନ ହୋଇପାରିବ ନାହିଁ ।

**ଯେଉଁ ପଦର ରୂପରେ କୌଣସି ପରିବର୍ତ୍ତନ ହୁଏନାହିଁ, ତାହାକୁ ଅବ୍ୟୟ ପଦ କହନ୍ତି ।**

'ଓ' 'କିମ୍ବା' ଦୁଇଟି **ଅବ୍ୟୟ ପଦ** ।

ବିଶେଷ୍ୟ ପଦ, କ୍ରିୟାପଦ, ବିଶେଷଣ ପଦ ଏବଂ ସର୍ବନାମ ପଦ- ଏସବୁର ରୂପରେ ପରିବର୍ତ୍ତନ ହୁଏ । ଉଦାହରଣ ସ୍ୱରୂପ-

ବିଶେଷ୍ୟ ପଦର ପରିବର୍ତ୍ତନ-

ଲୋକ, ଲୋକମାନେ, ଲୋକକୁ, ଲୋକମାନଙ୍କୁ, ଲୋକଦ୍ୱାରା, ଲୋକମାନଙ୍କଦ୍ୱାରା, ଲୋକପାଇଁ, ଲୋକମାନଙ୍କପାଇଁ ଇତ୍ୟାଦି ।

କ୍ରିୟାପଦର ପରିବର୍ତ୍ତନ-

ଖାଏ, ଖାଉଛି, ଖାଇଲା, ଖାଇବ, ଖାଆନ୍ତି, ଖାଉଛନ୍ତି, ଖାଇଲେ, ଖାଇବେ, ଖାଉଥିବ, ଖାଇଥିବେ ଇତ୍ୟାଦି ।

ବିଶେଷଣ ପଦର ପରିବର୍ତ୍ତନ-

ସରଳ-ସରଳା, ହଂସ-ହଂସୀ, ଡାକ୍ତର-ଡାକ୍ତରାଣୀ ଇତ୍ୟାଦି ।

ସର୍ବନାମ ପଦର ପରିବର୍ତ୍ତନ-

ସେ, ସେମାନେ, ତାକୁ, ସେମାନଙ୍କୁ, ତା ଠାରୁ, ସେମାନଙ୍କଠାରୁ ତାର, ସେମାନଙ୍କର ଇତ୍ୟାଦି ।

କିନ୍ତୁ ଅବ୍ୟୟ ପଦର କୌଣସି ପରିବର୍ତ୍ତନ ହୁଏନାହିଁ । ତାହାର ରୂପ ସର୍ବଦା ସମାନ ।

ଅବ୍ୟୟ ପଦ ଅନେକ । ଏଠାରେ କେତୋଟି ମାତ୍ର ଦିଆଗଲା-

କିନ୍ତୁ, ପୁଣି, ତଥାପି, ଯଦି, ତେଣୁ, ବା, ଅବା, ହଠାତ୍, କାହିଁକି, ବାରମ୍ବାର, ଆଚ୍ଛା, ସିନା, ପରା, ସର୍ବଦା, ତେବେ, ଆହା ଇତ୍ୟାଦି ।

ତୁମେ ନିମ୍ନଲିଖିତ ବାକ୍ୟମାନଙ୍କରେ ଅବ୍ୟୟପଦଗୁଡ଼ିକୁ ଚିହ୍ନାଇଦିଅ-

(କ) ଆପଣ କହୁଛନ୍ତି ସିନା, କିନ୍ତୁ ସେ ଆସିବ ନାହିଁ ।

(ଖ) ହରିବାବୁ ହଠାତ୍ ରାଗିଗଲେ ।

(ଗ) ଆଚ୍ଛା, କହ, ଦୁର୍ଯ୍ୟୋଧନ କାହିଁକି ହସିଲେ ?

(ଘ) ଯଦି ସେଠାକୁ ଯିବାକୁ ଚାହୁଁଛ, ତେବେ ଯାଅ ।

(ଙ) ଗୋପବନ୍ଧୁ ଅସୁସ୍ଥ ହୋଇପଡ଼ିଥିଲେ, ତଥାପି ସେ ବାରମ୍ବାର ଲୋକଙ୍କୁ ସାହାଯ୍ୟ କରିବାକୁ ଗଲେ ।

**ସତ କହିବାକୁ କିଆଁ ଡରିବି ।**
**ସତ କହିପଛେ ମଲେ ମରିବି ।**

**ସୁଖେ ଦୁଃଖେ ଅବା ସଂପଦେ ବିପଦେ**
**ରହୁ ମୋର ମନ ସଦା ତୁମ ପଦେ ।**





# ଶବ୍ଦରୁ ଶବ୍ଦ

| | | | | | |
|---|---|---|---|---|---|
| ବୁଦ୍ଧ | - | ବୌଦ୍ଧ | ଜ୍ଞାନ | - | ଜ୍ଞାନୀ |
| ବନ | - | ବନ୍ୟ | ପାହାଡ଼ | - | ପାହାଡ଼ିଆ |

'ବୁଦ୍ଧ' ଗୋଟିଏ ଶବ୍ଦ, 'ବୌଦ୍ଧ' ମଧ୍ୟ ଗୋଟିଏ ଶବ୍ଦ । ବୁଦ୍ଧ ଶବ୍ଦରୁ ବୌଦ୍ଧ ହୋଇଛି । ସେହିପରି 'ବନ', 'ଜ୍ଞାନ', 'ପାହାଡ଼' ଗୋଟିଏ ଗୋଟିଏ ଶବ୍ଦ । ବନରୁ ବନ୍ୟ ହୋଇଛି, ଜ୍ଞାନରୁ ଜ୍ଞାନୀ ହୋଇଛି ଏବଂ ପାହାଡ଼ରୁ ପାହାଡ଼ିଆ ହୋଇଛି ।

ପ୍ରଥମ ଶବ୍ଦକୁ **ମୂଳ ଶବ୍ଦ** କୁହାଯାଏ ଏବଂ ମୂଳ ଶବ୍ଦରୁ ହୋଇଥିବା ଶବ୍ଦକୁ **ତଦ୍ଧିତ ଶବ୍ଦ** କୁହାଯାଏ ।

ବୁଦ୍ଧ, ବନ, ଜ୍ଞାନ, ପାହାଡ଼- ଏଗୁଡ଼ିକ ଗୋଟିଏ ଗୋଟିଏ **ମୂଳ ଶବ୍ଦ** ।

ବୌଦ୍ଧ, ବନ୍ୟ, ଜ୍ଞାନୀ, ପାହାଡ଼ିଆ- ଏଗୁଡ଼ିକ ଗୋଟିଏ ଗୋଟିଏ **ତଦ୍ଧିତ ଶବ୍ଦ** ।

ମୂଳଶବ୍ଦ ଓ ତଦ୍ଧିତ ଶବ୍ଦର ବ୍ୟବହାର ସମାନ ଅର୍ଥରେ ହୁଏ ନାହିଁ, ଭିନ୍ନ ଅର୍ଥରେ ହୁଏ । କିନ୍ତୁ ସେହି ଦୁଇ ଅର୍ଥ ମଧ୍ୟରେ ସଂପର୍କ ଥାଏ । ଯେପରି-

**ବୁଦ୍ଧ** ଲୋକମାନଙ୍କୁ ସତ୍ ଉପଦେଶ ଦେଉଥିଲେ ।

ବହୁ ଦେଶରେ **ବୌଦ୍ଧ**ଧର୍ମର ଲୋକ ବାସ କରନ୍ତି ।

**ବନ**ରେ ବହୁ ପ୍ରକାର ପଶୁପକ୍ଷୀ ରହନ୍ତି ।

**ବନ୍ୟ**ପ୍ରାଣୀମାନଙ୍କୁ ମାରିବା ଉଚିତ ନୁହେଁ ।

ଈଶ୍ୱରଚନ୍ଦ୍ରଙ୍କର ବହୁତ ଶାସ୍ତ୍ରରେ **ଜ୍ଞାନ** ଥିଲା ।

ଈଶ୍ୱରଚନ୍ଦ୍ର ଜଣେ **ଜ୍ଞାନୀ** ଲୋକ ଥିଲେ ।

ଓଡ଼ିଶାରେ ଅନେକ **ପାହାଡ** ଅଛି ।

**ପାହାଡ଼ିଆ** ଜାଗାରେ ପଣସ ଗଛ ଭଲ ହୁଏ ।

ଏଠାରେ କେତେକ ମୂଳଶବ୍ଦ ଏବଂ ସେଥିରୁ ହୋଇଥିବା ତଦ୍ଧିତ ଶବ୍ଦ ଦିଆଗଲା ।

| | | | | | |
|---|---|---|---|---|---|
| ଶିବ | - | ଶୈବ | ମୂର୍ଖ | - | ମୂର୍ଖତା |
| ଭରତ | - | ଭାରତ | ବୀର | - | ବୀରତ୍ୱ |
| ଦଶରଥ | - | ଦାଶରଥି | ପୁଷ୍ପ | - | ପୁଷ୍ପିତ |
| ମରୁତ | - | ମାରୁତି | ଦାଢ଼ି | - | ଦାଢ଼ିଆ |
| ବର୍ଷ | - | ବାର୍ଷିକ | ମହୁରି | - | ମହୁରିଆ |
| ମାସ | - | ମାସିକ | ଡାକ୍ତର | - | ଡାକ୍ତରି |
| ସମାଜ | - | ସାମାଜିକ | ହଳ | - | ହଳିଆ |
| ବିଜ୍ଞାନ | - | ବୈଜ୍ଞାନିକ | ମୂଳ | - | ମୂଳିଆ |
| ସାହିତ୍ୟ | - | ସାହିତ୍ୟିକ | ଲୁଣ | - | ଲୁଣିଆ |
| ସୁନ୍ଦର | - | ସୌନ୍ଦର୍ଯ୍ୟ | ପଙ୍କ | - | ପଙ୍କୁଆ |
| ଅଳସ | - | ଆଳସ୍ୟ | ନାଟ | - | ନାଟୁଆ |
| ଗ୍ରାମ | - | ଗ୍ରାମ୍ୟ | ମିଛ | - | ମିଛୁଆ |
| ପର୍ବତ | - | ପାର୍ବତ୍ୟ | ଠକ | - | ଠକାମି |
| ଜଳ | - | ଜଳୀୟ | ଶଙ୍ଖା | - | ଶଙ୍ଖାରି |
| ଦେଶ | - | ଦେଶୀୟ | କାଚ | - | କାଚରା |

ତୁମେ ନିମ୍ନଲିଖିତ ମୂଳ ଶବ୍ଦକୁ ଓ ସେଥିରୁ ହୋଇଥିବା ତଦ୍ଧିତ ଶବ୍ଦକୁ ଲଗାଇ ଅଲଗା ଅଲଗା ବାକ୍ୟ ଗଠନ କର ।

| ମୂଳ ଶବ୍ଦ | ତଦ୍ଧିତ ଶବ୍ଦ |
|---|---|
| ଜଳ | ଜଳୀୟ |
| ବର୍ଷ | ବାର୍ଷିକ |
| ପଙ୍କ | ପଙ୍କୁଆ |
| ବିଜ୍ଞାନ | ବୈଜ୍ଞାନିକ |
| ବୀର | ବୀରତ୍ୱ |

କାଚରା ବୁଲି ବିକଇ କାଚ
ପାନରା ବିକେ ପାନ
ଢୋଲିଆ ନାଚି ଢୋଲ ବଜାଏ
ଚାଷୀ ଫଳାଏ ଧାନ ।



# ସମାସ ଶବ୍ଦ

| | |
|---|---|
| ବୀଣାପାଣି | ମାତୃଭାଷା |
| କାଠପୋଲ | ଯଥାଶକ୍ତି |

ଉପରେ ଚାରିଗୋଟି ଶବ୍ଦ ଲେଖାଯାଇଛି । କିନ୍ତୁ ପ୍ରକୃତରେ ଏଗୁଡ଼ିକରେ ଆଠଗୋଟି ଶବ୍ଦ ରହିଛି । 'ବୀଣାପାଣି'ରେ 'ବୀଣା' ଓ 'ପାଣି' ଦୁଇଟି ଶବ୍ଦ ଅଛି । 'କାଠପୋଲ'ରେ 'କାଠ' ଓ 'ପୋଲ' ଦୁଇଟି ଶବ୍ଦ ଅଛି । 'ମାତୃଭାଷା'ରେ 'ମାତୃ' ଓ 'ଭାଷା' ଦୁଇଟି ଶବ୍ଦ ଅଛି । 'ଯଥାଶକ୍ତି'ରେ 'ଯଥା' ଓ 'ଶକ୍ତି' ଦୁଇଟି ଶବ୍ଦ ଅଛି । ଦୁଇଟି ଲେଖାଏଁ ଶବ୍ଦ ମିଶି ଗୋଟିଏ ଲେଖାଏଁ ଶବ୍ଦ ହୋଇଛି ।

**ଏକାଧିକ ଶବ୍ଦ ମିଶି ଗୋଟିଏ ଶବ୍ଦ ହୋଇଥିଲେ ତାହାକୁ ସମାସ ଶବ୍ଦ କହନ୍ତି ।**

ବୀଣାପାଣି, କାଠପୋଲ, ମାତୃଭାଷା, ଯଥାଶକ୍ତି- ଏଗୁଡ଼ିକ ଗୋଟିଏ ଗୋଟିଏ **ସମାସ ଶବ୍ଦ** ।

ସମାସ ଶବ୍ଦକୁ ଏକାଠି ଲଗାଇକରି ଲେଖାଯାଏ, ଛଡ଼ାଛଡ଼ା କରି ଲେଖାଯାଏ ନାହିଁ । ବୀଣା ପାଣି, କାଠ ପୋଲ, ମାତୃ ଭାଷା, ଯଥା ଶକ୍ତି- ଏମିତି ଛଡ଼ାଛଡ଼ା କରି ଲେଖିବା ଠିକ୍ ନୁହେଁ । କାରଣ, ସମାସ ଶବ୍ଦକୁ ଗୋଟିଏ ଶବ୍ଦ ବୋଲି ଧରାଯାଏ ।

ତଳେ ଦୁଇ ଦୁଇଟି ଶବ୍ଦ ମିଶି ଗୋଟିଏ ଲେଖାଏଁ ଶବ୍ଦ ହୋଇଥିବା କେତେକ ସମାସ ଶବ୍ଦ ଦିଆଗଲା ।

| | |
|---|---|
| ପିତୃଭକ୍ତି | ନୀଳଚକ୍ର |
| ପୁତ୍ରସ୍ନେହ | ସୁନାହାର |
| ପିଇବାପାଣି | ଇଟାଭାଟି |
| ଗାଧୁଆଘର | ଅଷ୍ଟରତ୍ନ |
| ସମୁଦ୍ରଜଳ | ସପ୍ତାହ |
| ମାମୁଁଘର | ନୀଳକଣ୍ଠ |
| ଗଛପାଚିଲା | ମହାବାହୁ |
| ବଣଭୋଜି | ପ୍ରତିକ୍ଷଣ |
| ମହାପୁରୁଷ | ଦଶମୁଖ |
| ପାଦପଦ୍ମ | ଜନ୍ମଭୂମି |



ତୁମେ ନିମ୍ନଲିଖିତ ବାକ୍ୟମାନଙ୍କରେ ସମାସ ହୋଇଥିବା ପଦଗୁଡ଼ିକୁ ଚିହ୍ନାଇଦିଅ ।

(କ) ଭାରତ ଆମର ମାତୃଭୂମି ଅଟେ ।

(ଖ) ଆକାଶରେ ତାରାଗଣ ଶୋଭା ପାଉଛନ୍ତି ।

(ଗ) ବିଦ୍ୟାଧନଠାରୁ ବଡ଼ ଧନ ନାହିଁ ।

(ଘ) ରେଳପଥରେ ଅନେକ ଯାତ୍ରୀଗାଡ଼ି ଓ ମାଲଗାଡ଼ି ଚାଲୁଛି ।

(ଙ) ସମୁଦ୍ରପାଣିରୁ ଲୁଣ ଉତ୍ପାଦନ କରାଯାଏ ।

**ସାଧୁର ଲକ୍ଷଣ ଈଶ୍ୱରଭକ୍ତି ।**
**ଦୁଗ୍ଧପାନ କଲେ ବଢ଼ଇ ଶକ୍ତି ।**

**ବୀଣାପାଣି ସରସ୍ୱତୀ ବିଦ୍ୟାଦାତ୍ରୀ ମାଆଗୋ**
**ମାତୃଭାଷାକୁ ଆମର ସଦା ହୁଅ ସାହା ଗୋ ।**



# ସନ୍ଧି ଶବ୍ଦ

ତୁମେ ଜାଣିଛ, ଏକାଧିକ ଶବ୍ଦ ମିଶି ଗୋଟିଏ ଶବ୍ଦ ହେଲେ ତାହାକୁ ସମାସ ଶବ୍ଦ କୁହାଯାଏ ।

ତଳଲିଖିତ ଶବ୍ଦଗୁଡ଼ିକୁ ଦେଖ-

(କ) ବିଦ୍ୟାଳୟ

(ଖ) ସଚ୍ଚରିତ୍ର

(ଗ) ପୁନର୍ବାର

ଏଗୁଡ଼ିକ ମଧ୍ୟ ସମାସ ଶବ୍ଦ । କାରଣ 'ବିଦ୍ୟା' ଏବଂ 'ଆଳୟ' ଦୁଇଟି ଶବ୍ଦ ମିଶି 'ବିଦ୍ୟାଳୟ' ଶବ୍ଦଟି ହୋଇଛି । 'ସତ୍' ଏବଂ 'ଚରିତ୍ର' ଦୁଇଟି ଶବ୍ଦ ମିଶି 'ସଚ୍ଚରିତ୍ର' ଶବ୍ଦଟି ହୋଇଛି । ସେହିପରି 'ପୁନଃ' ଏବଂ 'ବାର' ଦୁଇଟି ଶବ୍ଦ ମିଶି 'ପୁନର୍ବାର' ଶବ୍ଦଟି ହୋଇଛି ।

ଆମେ ଲକ୍ଷ୍ୟ କରିପାରୁଥାଉଁ, ଏହି ଶବ୍ଦଗୁଡ଼ିକରେ ଦୁଇଟି ଲେଖାଏଁ ଶବ୍ଦ ମିଶି ଗୋଟିଏ ଲେଖାଏଁ ଶବ୍ଦ ହୋଇଛି ସତ, କିନ୍ତୁ ଉଭୟଙ୍କର ମଝିରେ କିଛି ପରିବର୍ତ୍ତନ ହୋଇଯାଇଛି ।

'ବିଦ୍ୟାଳୟ' ଶବ୍ଦରେ 'ଆଳୟ'ର 'ଆ'ଟି ନାହିଁ ।

'ସଚ୍ଚରିତ୍ର' ଶବ୍ଦରେ 'ସତ୍'ର 'ତ୍'ଟି ନାହିଁ ଏବଂ 'ଚରିତ୍ର'ର 'ଚ'ଟି 'ଚ୍ଚ' ହୋଇଯାଇଛି । 'ପୁନର୍ବାର' ଶବ୍ଦରେ 'ପୁନଃ'ର ବିସର୍ଗଟି ନାହିଁ ଏବଂ 'ବାର'ର 'ବା'ଟି 'ର୍ବା' ହୋଇଯାଇଛି । ଏହିପରି, ପରିବର୍ତ୍ତନମାନ ଆମେ ଲକ୍ଷ୍ୟ କରିପାରୁଥାଉଁ ।

**ଦୁଇଟି ଶବ୍ଦ ମିଶି ଗୋଟିଏ ଶବ୍ଦ ହୋଇଥିଲେ ଏବଂ ମଝିରେ କିଛି ପରିବର୍ତ୍ତନ ହୋଇଥିଲେ ସେଭଳି ଶବ୍ଦକୁ ସନ୍ଧି ଶବ୍ଦ କୁହାଯାଏ ।**

ବିଦ୍ୟାଳୟ, ସଚ୍ଚରିତ୍ର, ପୁନର୍ବାର, ଏଗୁଡ଼ିକ ଗୋଟିଏ ଗୋଟିଏ **ସନ୍ଧି ଶବ୍ଦ** ।

ସନ୍ଧିଶବ୍ଦରେ ମିଶିଥିବା ଶବ୍ଦଗୁଡ଼ିକୁ + ଚିହ୍ନଦ୍ୱାରା ଦେଖାଇ ଦିଆଯାଏ ।

ତଳେ + ଚିହ୍ନ ସହିତ କେତେକ ସନ୍ଧିଶବ୍ଦ ଦିଆଗଲା ।

| | |
|---|---|
| ବିଦ୍ୟା + ଆଳୟ = ବିଦ୍ୟାଳୟ | ସତ୍ + ଚରିତ୍ର = ସଚ୍ଚରିତ୍ର |
| ଜନ୍ମ + ଅଷ୍ଟମୀ = ଜନ୍ମାଷ୍ଟମୀ | ଜଗତ୍ + ନାଥ = ଜଗନ୍ନାଥ |
| ଦେବ + ଆଶିଷ = ଦେବାଶିଷ | ଚଳତ୍ + ଚିତ୍ର = ଚଳଚ୍ଚିତ୍ର |
| ମହା + ଆଶୟ = ମହାଶୟ | ଦିକ୍ + ଅମ୍ବର = ଦିଗମ୍ବର |
| ଗଣ + ଈଶ = ଗଣେଶ | ଷଟ୍ + ଆନନ = ଷଡ଼ାନନ |
| ମହା + ଈଶ୍ୱର = ମହେଶ୍ୱର | ମନଃ + କାମନା = ମନସ୍କାମନା |
| ଲମ୍ବ + ଉଦର = ଲମ୍ବୋଦର | ଚତୁଃ + ପଦ = ଚତୁଷ୍ପଦ |
| ପର + ଉପକାର = ପରୋପକାର | ପୁନଃ + ବାର = ପୁନର୍ବାର |
| ପ୍ରତି + ଏକ = ପ୍ରତ୍ୟେକ | ଅନ୍ତଃ + ଗତ = ଅନ୍ତର୍ଗତ |
| ସପ୍ତ + ଋଷି = ସପ୍ତର୍ଷି | ତପଃ + ବନ = ତପୋବନ |

ତୁମେ ନିମ୍ନଲିଖିତ ଲେଖାରେ ସନ୍ଧି ହୋଇଥିବା ପଦଗୁଡ଼ିକୁ ଚିହ୍ନାଅ ଏବଂ ସେଗୁଡ଼ିକୁ + ଚିହ୍ନଦ୍ୱାରା ଅଲଗା ଅଲଗା କର ।

ପଠାଣି ସାମନ୍ତ ମହାମହୋପାଧ୍ୟାୟ ଉପାଧି ପାଇଥିଲେ ।

ଜୟଦେବ ଶ୍ରୀଜଗନ୍ନାଥଙ୍କର ପରମ ଭକ୍ତ ଥିଲେ ।

ପ୍ରତ୍ୟେକ ପ୍ରାଣୀ ଦେହରେ ପରମେଶ୍ୱର ଅଛନ୍ତି ।

ପରୋପକାରେ ଯାହାର ସଦା ଥାଏ ମତି<br>
ଜଗଦୀଶ୍ୱର ତାହାକୁ ସହାୟ ହୁଅନ୍ତି ।

ସଜ୍ଜନ ସଙ୍ଗେ କଲେ ବାସ । ସୁଗୁଣ ହୋଇବ ବିକାଶ ॥



# ଓଡ଼ିଆ ଆମର ଭାଷା

ଓଡ଼ିଆ ଭାଷାର ଗୌରବ ସୁମରି
ଉଲ୍ଲସିତ ହୁଏ ମନ
ଭାରତେ ଆମର ଓଡ଼ିଆ ଭାଷା ତ
ଅଟେ ଭାଷା ପୁରାତନ ।
ଓଡ଼ିଆ ଭାଷାର କବି ଜଗନ୍ନାଥ
'ଅତିବଡ଼' ନାମେ ଖ୍ୟାତ
ଘରେ ଘରେ ପରା ପଢ଼ା ହେଉଅଛି
ତାଙ୍କ ଲେଖା 'ଭାଗବତ' ।
ଆବର ସାରଳା- ଦାସ ଉପଇନ୍ଦ୍ର
ଅଭିମନ୍ୟୁ ବଳଦେବ
ଏହିପରି କେତେ କବି ଲେଖକଙ୍କ
ରଚନା ଆମ ବିଭବ ।
ଓଡ଼ିଆ ପାଇକେ ରାଜ୍ୟ ଜିଣିଥିଲେ
ଗଙ୍ଗାଠାରୁ ଗୋଦାବରୀ
ଓଡ଼ିଆ ବଣିକେ ଯାଉଥିଲେ ପୁଣି
ବୋଇତେ ଦରିଆ ପାରି ।
ବନ ପରବତ ନଦୀ ଶସ୍ୟକ୍ଷେତ
ଶୋଭେ ଓଡ଼ିଶା ଭୂଇଁରେ
ପରିଶ୍ରମ କରି ହୃଦେ ସ୍ନେହ ଭରି
ଚଳନ୍ତି ଓଡ଼ିଆ ନରେ ।
ଓଡ଼ିଶା ଆମର ଓଡ଼ିଆ ଆମେ ତ
ଓଡ଼ିଆ ଆମର ଭାଷା
ଏହି ଭାଷା ପଢ଼ି ଲେଖି କହି ବୁଝି
ଉଚ୍ଚ ହେବା ଆମ ଆଶା ।





ଓଡ଼ିଆ ଭାଷା-ସାହିତ୍ୟରେ ବ୍ୟାକରଣକାର, ଭାଷାତତ୍ତ୍ୱବିତ୍, ଅନୁବାଦକ, ରମ୍ୟରଚନା ଲେଖକ, ପ୍ରାବନ୍ଧିକ ଓ ସାହିତ୍ୟ-ଆଲୋଚକ ଭାବରେ ଡକ୍ଟର ଧନେଶ୍ୱର ମହାପାତ୍ର (୧୯୩୨) ସୁପରିଚିତ। ବ୍ୟାକରଣ ପୁସ୍ତକ 'ସୁଗମ ବ୍ୟାକରଣ', 'ଆଧୁନିକ ଓଡ଼ିଆ ବ୍ୟାକରଣ' ଓ ' ଠିକ୍ ପଢ଼ ଠିକ୍ ଲେଖ'ର ସେ ରଚୟିତା। ଓଡ଼ିଆ ସାହିତ୍ୟକୁ ଅନୁପମ ଅବଦାନ ପାଇଁ ଓଡ଼ିଶା ସାହିତ୍ୟ ଏକାଡେମୀର ସର୍ବୋଚ୍ଚ ସମ୍ମାନ 'ଅତିବଡ଼ୀ ଜଗନ୍ନାଥ ଦାସ ପୁରସ୍କାର' ସେ ପାଇଛନ୍ତି। ଏହି ଆମ ଓଡ଼ିଆ ବ୍ୟାକରଣ ପୁସ୍ତକ ସ୍କୁଲ ପିଲାଙ୍କୁ ଓଡ଼ିଆ ବ୍ୟାକରଣ ବିଷୟରେ ଅବଗତ କରିବା ପାଇଁ ଡକ୍ଟର ମହାପାତ୍ରଙ୍କର ଏକ ନୂଆ ଉଦ୍ୟମ। ତାଙ୍କ ଭାଷାରେ, ଏହି ପୁସ୍ତକ ହେଉଛି 'ଓଡ଼ିଆ ବ୍ୟାକରଣର ବର୍ଣ୍ଣମାଳା।'









ISBN 81-89436-70-2